## ବିଶ୍ୱନାଟ୍ୟଦିବସ ୨୭.୩.୨୦୦୧ ଉପଲକ୍ଷେ

## ''ଇଣ୍ଟରନାସନାଲ ଥିଏଟର''ର ନାଟକ ''ଅପରାହ୍ଣର ଅବଶୋଷ''

ଉଦ୍‌ଘାଟକ - ଓଡ଼ିଶାର ରାଜ୍ୟପାଳ
ଶ୍ରୀଯୁକ୍ତ ଏମ୍.ଏମ୍.ରାଜେନ୍ଦ୍ରନ୍

ସ୍ଥାନ - ରବୀନ୍ଦ୍ରମଣ୍ଡପ, ଭୁବନେଶ୍ୱର

ନିର୍ଦ୍ଦେଶକ - ମିହିର ମେହେର

ସଙ୍ଗୀତ - ମଣ୍ଟୁ ମହାନ୍ତି

### ବିଭିନ୍ନ ଭୂମିକାରେ

ଭାନୁପ୍ରତାପ - ବୀରେନ୍ ରାଉତରାୟ

କୁମାର - ବିପିନ ତ୍ରିପାଠୀ

ଅହଲ୍ୟା - ହରପ୍ରିୟା ରଥ (ମନି)

ସୁଭଦ୍ରା - ଛବି ସେଠି

ଗଙ୍ଗା - ମମତା ମହାନ୍ତି

ରଙ୍କ - ଅଶ୍ୱିନୀ ମହାନ୍ତି

ବିକ୍ରମ - କାଶୀନାଥ ରଥ

ଝୁଲୁ - ସଂଜୀବ ପ୍ରଧାନ

ଦେୱାନ - ଶଙ୍କର ବସୁ ମଲ୍ଲିକ

ନାଟକର ପ୍ରଥମ ଅଭିନୟ - ଦୂରଦର୍ଶନ କେନ୍ଦ୍ର,
ଭୁବନେଶ୍ୱର- (୬.୧.୨୦୦୦)

ନିର୍ଦ୍ଦେଶକ - ମିହିର ମେହେର

ଦ୍ୱିତୀୟ ଅଭିନୟ - ବ୍ରହ୍ମପୁର ଟାଉନ ହଲ
(ଶାଶ୍ୱତୀ)- (୩୦.୧୨.୨୦୦୦)

ନିର୍ଦ୍ଦେଶକ - ସାର୍ଥକସାରଥୀ ସାମନ୍ତରାୟ

APARAHNARA ABASOSHA
by Dr. Narayana Sahoo
Published by Vidyapuri, Cuttack 753002

ISBN 81 - 7411- 443 - 2

ପ୍ରଥମ ପ୍ରକାଶ ୨୦୦୨
ଦ୍ୱିତୀୟ ମୁଦ୍ରଣ ଡିସେମ୍ବର ୨୦୦୭

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ମୁଦ୍ରଣ
ରୟାଲ୍ ହାଫ୍‌ଟୋନ୍ କୋ, କଟକ

ମୂଲ୍ୟ ଟ ୪୫.୦୦

## ବିଶ୍ୱନାଟ୍ୟଦିବସ ୨୭.୩.୨୦୦୧ ଉପଲକ୍ଷେ

## ''ଇଣ୍ଟରନାସନାଲ ଥିଏଟର''ର ନାଟକ ''ଅପରାହ୍ଣର ଅବଶୋଷ''

| | | |
|---|---|---|
| ଉଦ୍‌ଘାଟକ | - | ଓଡ଼ିଶାର ରାଜ୍ୟପାଳ<br>ଶ୍ରୀଯୁକ୍ତ ଏମ୍.ଏମ୍.ରାଜେନ୍ଦ୍ରନ୍ |
| ସ୍ଥାନ | - | ରବୀନ୍ଦ୍ରମଣ୍ଡପ, ଭୁବନେଶ୍ୱର |
| ନିର୍ଦ୍ଦେଶକ | - | ମିହିର ମେହେର |
| ସଙ୍ଗୀତ | - | ମଞ୍ଜୁ ମହାନ୍ତି |

## ବିଭିନ୍ନ ଭୂମିକାରେ

| | | |
|---|---|---|
| ଭାନୁପ୍ରତାପ | - | ବୀରେନ୍ ରାଉତରାୟ |
| କୁମାର | - | ବିପିନ ତ୍ରିପାଠୀ |
| ଅହଲ୍ୟା | - | ହରପ୍ରିୟା ରଥ (ମନି) |
| ସୁଭଦ୍ରା | - | ଛବି ସେଠି |
| ଗଙ୍ଗା | - | ମମତା ମହାନ୍ତି |
| ରଙ୍କ | - | ଅଶ୍ୱିନୀ ମହାନ୍ତି |
| ବିକ୍ରମ | - | କାଶୀନାଥ ରଥ |
| ବୁଲୁ | - | ସଂଜୀବ ପ୍ରଧାନ |
| ଦେଓ୍ୱାନ | - | ଶଙ୍କର ବସୁ ମଲ୍ଲିକ |
| ନାଟକର ପ୍ରଥମ ଅଭିନୟ | - | ଦୂରଦର୍ଶନ କେନ୍ଦ୍ର,<br>ଭୁବନେଶ୍ୱର- (୬.୧.୨୦୦୦) |
| ନିର୍ଦ୍ଦେଶକ | - | ମିହିର ମେହେର |
| ଦ୍ୱିତୀୟ ଅଭିନୟ | - | ବ୍ରହ୍ମପୁର ଟାଉନ ହଲ<br>(ଶାଶ୍ୱତୀ)- (୩୦.୧୨.୨୦୦୦) |
| ନିର୍ଦ୍ଦେଶକ | - | ସାର୍ଥକସାରଥୀ ସାମନ୍ତରାୟ |

## ଚରିତ୍ର

| | | |
|---|---|---|
| ରାଜା ଭାନୁପ୍ରତାପ | - | ରାଜ୍ୟ ଓ ରାଜଗାଦି ହରାଇଥିବା ମଣିଷ |
| ରଙ୍କ | - | ରାଜାଙ୍କ ବୁଢ଼ା ଚାକର |
| ମନୋଜ | - | ଫଟୋଗ୍ରାଫର |
| କୁମାର | - | ରାଜକୁମାର |
| ବୁଲୁ | - | ଦେୱାନଙ୍କ ପୁଅ/ସବ୍‌କଲେକ୍ଟର |
| ଦେୱାନ | - | ରାଜାଙ୍କ ପୂର୍ବତନ ଦେୱାନ |
| ବିକ୍ରମ | - | ମିଲିଟାରୀ ଅଫିସର / ରାଜାଙ୍କ ସାଙ୍ଗ |
| ଅହଲ୍ୟା | - | କୁମାରର ପ୍ରେମିକା / ପତ୍ନୀ |
| ସୁଭଦ୍ରା | - | ରାଣୀ |

ନାଟକଟି *'ଅସ୍ତରାଗ'* ଏବଂ *'ଅସ୍ତରାଗର ଏଲିଜି'* ନାମରେ ମଧ୍ୟ ଅଭିନୀତ ହୋଇଛି ।

# ପ୍ରଥମ ଦୃଶ୍ୟ

ସ୍ଥାନ - ଡ୍ରଇଂ ରୁମ୍
ସମୟ - ଯେକୌଣସି ସମୟ
ଚରିତ୍ର - ରାଜା

[ ରାଜତନ୍ତ୍ର ଉଚ୍ଛେଦ ହେବାର ପରବର୍ତ୍ତୀ ସମୟ । କୌଣସି ଏକ ଗଡ଼ ଗଡ଼ଜାତର ରାଜା ଭାନୁପ୍ରତାପ । ଗଣତନ୍ତ୍ର ତାଙ୍କଠାରୁ ଛଡ଼ାଇ ନେଇଛି ରାଜଗାଦି ଓ ରାଜାର ଅଧିକାର । ଏବେବି ଲୋକେ ତାଙ୍କୁ ରାଜାସାହେବ ଭାବରେ ଜାଣନ୍ତି । ରାଜସିଂହାସନ ଯିବାର ତିରିଶ ବର୍ଷ ପରେ ମଧ ଭାନୁପ୍ରତାପ ତାଙ୍କର ସେହି ପୁରୁଣା ଖୋଳପା ଭିତରୁ ବାହାରି ଆସିବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କ ମନ ଭିତରେ ଏବେବି ରାଜତନ୍ତ୍ରର ଅହମିକା ଭରି ରହିଛି । ଗଣତାନ୍ତ୍ରିକ ଶାସନରେ ଭାନୁପ୍ରତାପ ଯେ ଜଣେ ଶୃଙ୍ଖଳିତ ନାଗରିକ, ଏ କଥା ସେ ମାନିବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କ ଚେତନାର ଚୌହଦିରେ ଏବେବି ବେଢ଼ି ରହିଛି ରାଜତନ୍ତ୍ରର ପାଣ୍ଡୁର ବଳୟ ।

ରାଜା ଭାନୁପ୍ରତାପଙ୍କ ଡ୍ରଇଂରୁମ୍ । ଧ୍ୱସ୍ତ ରାଜବାଟୀର ବିକଳ ଚିତ୍ରକୁ ଜାହିର କରୁଛି ଭାନୁପ୍ରତାପଙ୍କର ଏଇ ଦରବାର ହଲ୍ ଯାହା ପରବର୍ତ୍ତୀ କାଳରେ ରୂପାନ୍ତରିତ ହୋଇଛି ଏକ ଡ୍ରଇଂରୁମ୍‌ରେ । ସବୁକିଛି ପୁରୁଣା...କଳଙ୍କି ଲଗା... । ଯତ୍ନର ଅଭାବରୁ ସବୁ ଜିନିଷ ଉପରେ ମଇଳାର ଆସ୍ତରଣ ଜମାଟ ବାନ୍ଧିଛି ।

ଡ୍ରଇଂରୁମ୍‌ରେ ପଡ଼ିଛି ଗୋଟିଏ ପୁରୁଣା ରାଉଣ୍ଡଟେବୁଲ । ଟେବୁଲ ଉପର ପରଦାଟି ସ୍ଥାନେ ସ୍ଥାନେ ଛିଡ଼ିଯାଇଛି । ପାଖକୁ ଲାଗି ପଡ଼ିଛି ଦୁଇ/ତିନୋଟି ଚେୟାର । ଗୋଟିଏ ଆର୍ମଚେୟାର ଏବଂ ଗୋଟିଏ ପୁରୁଣା

ସିଂହାସନ । ପାଖ କାନ୍ଥରେ ଝୁଲୁଛି ତରଓ୍ୱାଲ, ବନ୍ଧୁକ, ବାଘଛାଲ, ବାଘମୁଣ୍ଡ । ଟେବୁଲ ଉପରେ ଫୁଲଦାନୀ ଭିତରେ ପଡ଼ିଛି ଏକ ବଂଶୀ । ସବୁକିଛି ପୁରୁଣା । ଏ ସବୁ ଦେଖିଲେ ମନେହୁଏ, କେହି ଯେମିତି ରାଜବାଟୀ ଉପରେ କଳା ଚାଦରଟା ଘୋଡ଼େଇ ଦେଇଛି ।

ମଞ୍ଚରେ ଆଲୋକ ଆସିବାମାତ୍ରେ ଦେଖାଯାଇଛି, କେବଳ ମଞ୍ଚର ପରିପାଟୀ । କୌଣସି ଚରିତ୍ର ମଞ୍ଚ ଉପରେ ନାହାନ୍ତି । ଶୂନ୍ୟ ମଞ୍ଚରେ ପ୍ରତିଧ୍ୱନିତ ହୋଇ ଉଠିଛି ଏକ ସ୍ୱର...]

ସ୍ୱର - ମୁଁ ଓଁକାର... । ସୃଷ୍ଟିର ପ୍ରଥମ ସ୍ୱର... । ମୁଁ ନିରାକାର । ମୁଁ ସତ୍ୟ ସନାତନ । ମୁଁ ସମୟ... । ମୁଁ ଦେଖିଛି ହୀରୋସୀମା ଆଉ ନାଗାସାକୀର ଧ୍ୱଂସାବଶେଷ । ମୁଁ ସୃଷ୍ଟି କରିଛି ମହେଞ୍ଜୋଦାରୋ ଆଉ ହରପ୍ପା । ମୋ ଭିତରେ ଆଜି ବି ତାଜା କାରଗିଲ୍‌ର ସ୍ମୃତି । ସମୟର ସୋପାନରେ ମୁଁ ଭେଟିଛି ସ୍ୱେଚ୍ଛାତନ୍ତ୍ର... ରାଜତନ୍ତ୍ର ଆଉ ଗଣତନ୍ତ୍ର... !

[Music ଧୀରେ ଧୀରେ up and down ହେବ । ସେହି ଅନୁସାରେ ଆଲୋକର ଗତି ମଧ୍ୟ ନିୟନ୍ତ୍ରିତ ହେବ ।]

ସ୍ୱର - ହଁ, ଝଡ଼ର ଡେଣାରେ ପ୍ରଗତିକୁ ପିଠିକରି ଯେଉଁମାନେ ମୋ ଗତିକୁ ରୋଧିବାକୁ ଚେଷ୍ଟା କରୁଥିଲେ, ସେମାନଙ୍କ ଗର୍ବ ଦମ୍ଭ ଆସ୍ଫାଳନ ବୁଦ୍‌ବୁଦ ଆକାରରେ ମିଳାଇଗଲା । ଆଉ ରହିଗଲା ଶେଷହୀନ ହା-ହା-କାର ଦୀର୍ଘଶ୍ୱାସ... । ସେହି ଦୀର୍ଘଶ୍ୱାସର ସର୍ବଶେଷ ପରିଣତି ହେଉଛନ୍ତି ଭାନୁପ୍ରତାପ... ରାଜା ଭାନୁପ୍ରତାପ... । ପ୍ରତାପ ଚାଲିଯାଇଛି ମାତ୍ର ନାମକୁ ମାତ୍ର ବଞ୍ଚିରହିଛି ଅଥର୍ବ 'ଭାନୁ'...

[ମଞ୍ଚକୁ ଆସିଛନ୍ତି ଭାନୁପ୍ରତାପ । ଦେହରେ ଟ୍ରାଉଜର ପଞ୍ଜାବି, ମାତ୍ର ଆଖିରେ ଆଖିଏ ରାଜକୀୟ ଠାଣି । ବୟସର ଉତ୍ତୀର୍ଣ୍ଣ ପାହାଚରେ ପହଞ୍ଚିଛନ୍ତି ଭାନୁପ୍ରତାପ । ସେ ଆଜି କ୍ଳାନ୍ତ । ସିଂହାସନ ପାଖକୁ ଆଗେଇ ଯାଇଛନ୍ତି, ଯାହା ଏକଦା ଥିଲା ତାଙ୍କର ପ୍ରିୟ...ଅତି ପ୍ରିୟ... ।

ଜରାଜୀର୍ଣ୍ଣ ସିଂହାସନକୁ ଆଉଁଶି ଦେଉଛନ୍ତି । ଖୁସିରେ ସିଂହାସନ ଉପରେ ବସୁ ବସୁ ସିଂହାସନ ଭିତରୁ ଭାସିଆସିଛି ଏକ ସ୍ୱର..]

ସ୍ୱର - ନା' ଭାନୁପ୍ରତାପ ନା'... । ସେ ଅଧିକାର ତମେ ହରାଇ ବସିଛ । ରାଜତନ୍ତ୍ରର ଉଚ୍ଛେଦ ସହିତ ସିଂହାସନ ମଧ ସମାଧି ନେଇଛି । ଗଣତନ୍ତ୍ର ତମଠୁଁ ସେ ଅଧିକାର ଛଡ଼ାଇ ନେଇଛି । ତମର ସେ ପ୍ରିୟ ସିଂହାସନ ଉପରେ ଅଳନ୍ଦୁର ଆସ୍ତରଣ । କ'ଣପାଇଁ ବୃଥା ଚେଷ୍ଟା କରୁଛ ?

ରାଜା - ନା'... ! ତାହା କେବେ ହୋଇପାରେନା । ସିଂହାସନ ମୋର । ମୁଁ ତାକୁ ସୃଷ୍ଟି କରିଛି । ତାର ଉତ୍ତରାଧିକାରୀ ମୁଁ । ମୋ ଠାରୁ ମୋ ସିଂହାସନକୁ କେହି ଅଲଗା କରିପାରିବେ ନାହିଁ । ନା'... କଦାପି ନୁହେଁ... ।

[ସିଂହାସନ ଉପରୁ ଧୀରେ ଧୀରେ ଉଠି ଆସିଛନ୍ତି ରାଜା । ମନ ଭିତରେ ଶଙ୍କା । ଯୁଗପଦ୍ ଆଶଙ୍କା ଓ ଅହମିକାର ବିଦ୍ରୋହ...]

[ରାଜା ଧୀରେ ଧୀରେ ପୁନର୍ବାର ଆଗେଇ ଯାଉଛନ୍ତି ବନ୍ଧୁକ ପାଖକୁ । ନିରେଖି ଚାହିଁଛନ୍ତି । ମୁହଁରେ ତୃପ୍ତିର ହସ । ହାତ ବଢ଼ାଇଛନ୍ତି ଧରିବାକୁ । ବନ୍ଧୁକ ଭିତରୁ ବିଜପି ଉଠିଛି ସ୍ୱର...]

ସ୍ୱର - ନା' ଭାନୁ ନା'... ! ତମେ ଆଉ ସେ ବନ୍ଧୁକ ସ୍ପର୍ଶ କରିପାରିବ ନାହିଁ । ଆଇନ ସେ ଅଧିକାର ତମଠୁଁ ଛଡ଼େଇ ନେଇଛି । ବଣ୍ୟଜନ୍ତୁ ସଂରକ୍ଷଣ ଆଇନ ପଶୁପକ୍ଷୀ ଶିକାରକୁ ନିଷିଦ୍ଧ କରିଛି । ତେଣୁ ନିଜ ଅଧିକାର ବିଷୟରେ ସଚେତନ ହୁଅ... ।

ରାଜା - 'ନା'... ! ମୋତେ କେହି ବାରଣ କରିପାରିବେ ନାହିଁ । ମୁଁ ହରିଣ ଶିକାର କରିବି... ଚିତା ଶିକାର କରିବି... । ଶିକାରଟା ରାଜାର ବ୍ୟକ୍ତିଗତ ଅଧିକାର । ତାକୁ ମୋ'ଠାରୁ କେହି ଛଡ଼ାଇ ନେଇପାରିବେ ନାହିଁ । ରାଜା ଆଇନ ତିଆରି କରେ । ହେଲେ ରାଜା ପାଇଁ ଆଇନ ନୁହେଁ ।

[ବନ୍ଧୁକ ସ୍ପର୍ଶ ନ କରି ଫେରିଆସିଛନ୍ତି । ଆଖିରେ ପଡ଼ିଛି ଚାବୁକ । ରାଜା ଉତ୍ତରେ ନିଆଁ ପ୍ରସରି ଯାଇଛି । ହାତ ବଢ଼ାଇଛନ୍ତି ଉତ୍ତେଜନାରେ । ଚାବୁକ୍ ଭିତରୁ ପ୍ରତିଧ୍ୱନିତ ହୋଇଛି ଆୱାଜ୍...]

ସ୍ୱର - ନା'... ରାଜା... ନା'... ! ବେଠି ବେଗାରିର ଯୁଗ ଚାଲିଯାଇଛି । କୋରଡ଼ା ମାରି ଅନ୍ୟକୁ ଶାସନ କରିବାର ସମୟ ଆଜି ଅତିକ୍ରାନ୍ତ । ତମେ ଆଉ ରାଜା ହୋଇ ରହି ନାହଁ କିମ୍ବା ସେମାନେ ତମର ପ୍ରଜା ନୁହଁନ୍ତି । ଆଖି ଆଗରେ ଯାହାକୁ ଦେଖୁଛ, ସେମାନେ ସମସ୍ତେ ଶୃଙ୍ଖଳିତ ନାଗରିକ ।

ରାଜା - 'ନା'... ! ତାହା କେବେ ହୋଇପାରେନା । ରାଜାହିଁ ରାଜା । ଆଉ ସେମାନେ ମୋର ଆଜ୍ଞାଧୀନ ପ୍ରଜା । କଥା ନ ମାନିଲେ ମୋ ଚାବୁକ ସେମାନଙ୍କୁ ଠିକଣା ବାଟକୁ ଆଣିବ । ଏଇଟା ରାଜା ଭାନୁପ୍ରତାପର ଆଦେଶ.... ।

[ବିବ୍ରତ ଅବସ୍ଥାରେ ପଦଚାଳନା କରିଛନ୍ତି ଭାନୁପ୍ରତାପ । ତରବାରି ପାଖକୁ ଆଗେଇ ଯାଇଛନ୍ତି । ହସ୍ତ ପ୍ରସାରଣ କରନ୍ତେ ସ୍ୱର ବିଳପି ଉଠିଛି]

ସ୍ୱର - ଭାନୁପ୍ରତାପ ! ଆଉ ଅଧିକ ଅଗ୍ରସର ହୁଅନି । ରାଜତନ୍ତ୍ରର ବିଲୋପ ସାଥିରେ ସେ ତରବାରିଟା ବି ଧ୍ୱଂସ ହୋଇଯାଇଛି । ସିଂହାସନ ସହିତ ଶାସନ ହୁଗୁଳି ଯାଇଛି । ତମେ ଜଣେ ସାଧାରଣ ନାଗରିକ ହୋଇଯାଇଛ । ଆଉ ଯଦି ବାଧା ସୃଷ୍ଟି କର, ତମପାଇଁ କୋର୍ଟ କଚେରି ଆଇନ ରହିଛି... ।

ରାଜା - 'ନା'... । ରାଜା ସବୁ ଆଇନକାନୁନର ଊର୍ଦ୍ଧ୍ୱରେ । ରାଜା ସୃଷ୍ଟି କରିଛି ଦଣ୍ଡନୀତି । ସେଇଟା ଅନ୍ୟମାନଙ୍କ ପାଇଁ... ହେଲେ ରାଜା ପାଇଁ ନୁହେଁ ।

[ବ୍ୟସ୍ତ ଭାବରେ ଭାନୁପ୍ରତାପ ଫେରିଆସିଛନ୍ତି । ଊର୍ଦ୍ଧ୍ୱକୁ ଚାହିଁଛନ୍ତି । ଦୀର୍ଘଶ୍ୱାସ ଛାଡ଼ି ଚେୟାର ଉପରେ ଯାଇ ବସିଛନ୍ତି ଭାନୁପ୍ରତାପ ।]

ସ୍ୱର - ଏବେବି ସମୟ ଅଛି ଭାନୁପ୍ରତାପ । ଜାଗତିକ ମହାସ୍ରୋତରେ ମିଶିଯାଅ । ସେମାନେ ତମକୁ ସ୍ନେହରେ ଆଦରି ନେବେ । ପଛକଥା ଭୁଲିଯାଇ କ୍ଷମା ଦେବେ ।

ରାଜା - 'ନା'...

[ଚିତ୍କାର କରି ଉଠିଛନ୍ତି ଭାନୁପ୍ରତାପ । କାନ ଦୁଇଟିକୁ ଜାବୁଡ଼ି ଧରିଛନ୍ତି ।]

## ଦ୍ୱିତୀୟ ଦୃଶ୍ୟ

ଚରିତ୍ର - ରାଜା, ରଙ୍କ, ମନୋଜ
ସ୍ଥାନ - ରାଜାଙ୍କ ଦରବାର ହଲ/ଡ୍ରଇଂରୁମ୍
ସମୟ - ରାତି

[ ରାଜା ଭାନୁପ୍ରତାପଙ୍କ ଡ୍ରଇଂ ରୁମ୍ । ସମୟ ରାତି । ଭାନୁପ୍ରତାପଙ୍କ ଦେହରେ ସାଧାରଣ ପୋଷାକ । ଆର୍ମଚେୟାର ଉପରେ ଶୋଇ ଯାଇଛନ୍ତି । ଘୁଙ୍ଗୁଡ଼ି ମାରୁଛନ୍ତି । ମଞ୍ଚରେ ଝାପ୍‌ସା ଅନ୍ଧାର । ସେହି ଅନ୍ଧାର ଭିତରେ ପାଦ ଟିପି ଟିପି ଆସିଛି ମନୋଜ, ଫଟୋଗ୍ରାଫର୍ । ରାଜା ଉପରେ ସେ ଏକ ଡକୁମେଣ୍ଟାରୀ ପ୍ରସ୍ତୁତ କରୁଛି । ବିଭିନ୍ନ ପ୍ରକାର ଫଟୋ ଉଠାଇଛି ମନୋଜ । ଆସିଲେ ଧୀରେ ଧୀରେ ରାଜାଙ୍କ ପାଖକୁ । ଉଠାଇଛି ଫଟୋ । ମନକୁ ମନ କହିଉଠିଛି ମନୋଜ...]

ମନୋଜ - 'ରାଜା'... ! ବୟସର ରଙ୍ଗ ଲିଭିଗଲା ପରେବି ଉଷ୍ଣତା ଯାଇନି ।

[ସିଗାରେଟ୍ ଲଗାଇଛି ମନୋଜ । ଚାରିଆଡ଼କୁ ଚାହିଁଛି । ମନେ ମନେ ହସିଉଠିଛି]

ମନୋଜ - ଭୋକ ଉପାସରେ ମଧ ମଣିଷ ଶାନ୍ତିରେ ଶୋଇପାରେ । ବିଚିତ୍ର ଜୀବନ ! ରାଜତ୍ୱ ଚାଲିଯାଇଛି । ସିଂହାସନ ଚାଲିଯାଇଛି । କ୍ଷମତା ଚାଲିଯାଇଛି । ତଥାପି ସେ ରାଜା ।

[ସିଗାରେଟ୍ ଧୂଆଁ ଛାଡ଼ିଲାବେଳକୁ ଆସିଛି ଭିତରକୁ ରଙ୍କ, ରାଜାଙ୍କ ବୁଢ଼ା ଚାକର]

ରଙ୍କ - 'ବାବୁ'... !

[ମଞ୍ଚରେ ଆଲୋକ ସାଧାରଣ ହୋଇଛି]

[ମନୋଜ ନୀରବ ରହିବାକୁ ଇଙ୍ଗିତ ଦେଇଛନ୍ତି ରଙ୍କକୁ । ରଙ୍କ କିଛି ବୁଝିପାରିନି]

ରଙ୍କ - ଡରୁଛ କାହିଁକି ? କିଛି ହବନି । ହଁ, ଏତେ ରାତିରେ ତମେ ଏସବୁ କ'ଣ କରୁଛ ?

ମନୋଜ - ଏତେସବୁ ଘଟଣା ପରେ ଲୋକଟା ଟିକିଏ ବି ନଉଁନି ।

ରଙ୍କ - ସେ ପରା ମଣିମା... ରାଜା... । ରାଜାମାନେ କ'ଣ କେବେ ନଇଁବାଟାକୁ ପସନ୍ଦ କରନ୍ତି !

ମନୋଜ - ବେଶ୍ ନିଶ୍ଚିନ୍ତରେ ଶୋଇଯାଇଛନ୍ତି ।

ରଙ୍କ - ଏସବୁ ହଉଛି 'ଭାଙ୍ଗ'ର କରାମତି । ତାଙ୍କ ନିଦ ସହଜରେ ଭାଙ୍ଗିବନି ।

ମନୋଜ - ବିଲାତୀ ଛାଡ଼ି ଭାଙ୍ଗ... !

ରଙ୍କ - ରାଣୀମା' ଗଲାପରଠୁଁ ଶ୍ରୀ ତୁଟିଯାଇଛି । ରାଜବାଟୀ ତ ଅଧାଅଧି ବିକିରି ସରିଲାଣି । ଟଙ୍କା କୋଉଠୁ ପାଇବେ ଯେ ବିଲାତୀ ଖାଇବେ ।

ମନୋଜ - ରାଣୀମା' କ'ଣ ଫେରିବେନି ?

ରଙ୍କ - 'ନା' ! ମଣିମା ତାଙ୍କୁ ଯେମିତି ଅପମାନ ଦେଇଛନ୍ତି-

ମନୋଜ - 'କୁମାରବାବୁ'...

ରଙ୍କ - ସିଏ ତ ପିଲାଲୋକ ! କ'ଣ ବା କରିପାରିବେ !

ମନୋଜ - ରାଣୀମା'ଙ୍କ ବିଷୟରେ କିଏ କହିପାରିବ ? ହଁ, ସେ ଏବେ କୋଉଠି ରହୁଛନ୍ତି ?

ରଙ୍କ - କିଏ ଜାଣେ ! କେଡ଼େ ବଡ଼ ରାଜବାଟୀ ! କ'ଣ ହୋଇଗଲା ? ମୋରି ଆଖି ଆଗରେ ସବୁ ଗୋଟି ଗୋଟି ହୋଇ ଝଡ଼ିଗଲା !

[କରୁଣ ରାଗିଣୀର ଝଙ୍କାର ତେଜିଉଠିଛି, ମଞ୍ଚ ଧୀରେ ଧୀରେ ଅନ୍ଧକାର ହୋଇଛି]

# ତୃତୀୟ ଦୃଶ୍ୟ

ସ୍ଥାନ - ଡାଇନିଂ ରୁମ୍
ସମୟ - ରାତିର ଶେଷ ପ୍ରହର
ଚରିତ୍ର - କୁମାର, ସୁଭଦ୍ରା, ରଙ୍କ

[ରୟାଲ ଡାଇନିଂ ପ୍ଲେସ୍ । ଡାଇନିଂ ଟେବୁଲ ସହିତ କେତୋଟି ଚେୟାର ପଡ଼ିଛି । ଟେବୁଲ ଉପରେ ପ୍ଲେଟ, ଗ୍ଲାସ, ଚାମଚ ଆଦି ବିଭିନ୍ନ ଡାଇନିଂ ସରଞ୍ଜାମ । ଡାଇନିଂ ଟେବୁଲରେ ଖାଇ ବସିଛନ୍ତି କୁମାର । ପାଖରେ ବସିଛନ୍ତି ସୁଭଦ୍ରା । ଡାଇନିଂ ଟେବୁଲଠାରୁ କିଛି ଦୂରରେ ଘୁମେଇ ପଡ଼ିଛି ରଙ୍କ । ରାତିର ପାହାନ୍ତି ପ୍ରହର । ସେ ସ୍ୱପ୍ନ ଦେଖୁଛି । ରାଣୀମା, କୁମାର ଖାଇ ବସିଛନ୍ତି ।

ପ୍ରଥମେ ସ୍ପଟ୍ ଲାଇଟ ରଙ୍କ ଉପରେ ପଡ଼ିବ । ସେହି ଝାପ୍‌ସା ଆଲୋକ ଭିତରେ ରଙ୍କ କଡ଼ ଲେଉଟାଇବ । ରଙ୍କ ଉପରୁ ଧୀରେ ଧୀରେ ଲାଇଟ କଟିବ । ପରେ ପରେ ଡାଇନିଂ ଟେବୁଲ ଆଲୋକିତ ହେବ । ଡାଇନିଂ ସ୍ପଟ୍‌ରେ ରାଣୀମା ଏବଂ କୁମାର]

ସୁଭଦ୍ରା - ଆଉ ଗୋଟାଏ ମାଛ ଦଉଛି ?

କୁମାର - 'ନା'... !

ସୁଭଦ୍ରା - କୁମାର, ମାମୁଙ୍କ ପାଖରୁ ଚିଠି ପାଇଥିଲ ?

କୁମାର - ହଁ । ସେ ୧୫ ତାରିଖ ଦିନ ମୋ ପାଖକୁ ଯାଇଥିଲେ ।

ସୁଭଦ୍ରା - ତମ ପାଠପଢ଼ା ଆଉ କେତେଦିନ ଲାଗିବ ?

କୁମାର - ଆରମ୍ଭ ତ ହେଇଛି । ଆଉ ତିନିବର୍ଷ ଲାଗିବ ।

ସୁଭଦ୍ରା - ତମେ ନ ରହିଲେ ଏ ରାଜବାଟୀ ଫାଙ୍କା ଫାଙ୍କା ଲାଗୁଛି ।

କୁମାର - ଚାହୁଁ ଚାହୁଁ ସମୟ ଗଡ଼ିଯିବ ।

ସୁଭଦ୍ରା - ତରକାରି ଆଉ ଦେବି ?

କୁମାର - ନା'... ! 'ମା'-

ସୁଭଦ୍ରା - ତମେ ଯାହା କହିବାକୁ ଚାହୁଁଛ, ମୁଁ ଜାଣେ ।

କୁମାର - ଅଯଥା ହସ୍ତକ୍ଷେପ ମତେ ଭଲ ଲାଗେନା ।

ସୁଭଦ୍ରା - ମଣିମାଙ୍କୁ ତ ପ୍ରଥମରୁ ଜାଣିଛ । କାହିଁକି ଅଭିମାନ କରୁଛ ?

କୁମାର - ସେଦିନ ସମସ୍ତଙ୍କ ସାମନାରେ ସେ ଯେମିତି ମତେ- ମୁଁ କ'ଣ ସେହି ଦଶବର୍ଷର ଛୁଆ ହେଇ ରହିଛି ?

ସୁଭଦ୍ରା - ହଉ ହେଲା । ମୁଁ ତାଙ୍କୁ କହିଦେବି । ସେ ଆଉ କେବେ ଏମିତି କହିବେନି ।

କୁମାର - ଆଗରୁ ତ କେତେଥର କହିଛ । କ'ଣ ହୋଇଛି ?

ସୁଭଦ୍ରା - ତମେ ଆଦୌ ମନଦୁଃଖ କରନି । ମୁଁ ବୁଝେଇଦେବି ।

[ହଠାତ୍ କୁମାରର କାଶ ଉଠିଛି । ଚିତ୍କାର କରି ସୁଭଦ୍ରା ପାଣି ପାଇଁ ରଙ୍କୁ ଡାକିଛନ୍ତି]

ସୁଭଦ୍ରା - 'ରଙ୍କ'...'ରଙ୍କ'... । ଆରେ ପାଣି ଆଣ ।

[ଲାଇଟ୍ କଟିଛି । ଆଲୋକ ଆସିଛି ରଙ୍କ ଉପରେ । ସେତେବେଳକୁ ଡାଇନିଂ ଟେବୁଲ୍‌ରେ କେହି ନ ଥିବେ ।]

ରଙ୍କ - ନଉଛି, ରାଣୀମା'... ନଉଛି...

[ହଠାତ୍ ଏତିକି କହି ନିଦରୁ ଉଠିପଡ଼ିଛି । ଚାରିଆଡ଼କୁ ଚାହିଁଛି । କାହାରିକୁ ଦେଖିନି ।]

ରଙ୍କ - ତା'ହେଲେ, ମୁଁ କ'ଣ ସ୍ୱପ୍ନ ଦେଖୁଥିଲି ?

[ମୁହଁରେ ହସ । ଆଲୋକ ଲିଭିଛି]

# ଚତୁର୍ଥ ଦୃଶ୍ୟ

ସ୍ଥାନ - ଡ୍ରଇଂରୁମ୍
ସମୟ - ମଧ୍ୟାହ୍ନ
ଚରିତ୍ର - ରାଜା, ମନୋଜ

[ରାଜା ଭାନୁପ୍ରତାପଙ୍କ ଡ୍ରଇଂରୁମ୍ । ସବୁ ଜିନିଷ ସେମିତି ଅପରିବର୍ତ୍ତିତ ରହିଛି । ବାହାରୁ ଆସିଛି ଫଟୋଗ୍ରାଫର ମନୋଜ । ରାଜାଙ୍କର ବଇଁଶୀଟିକୁ ଚାହିଁଛି । ହାତରେ ଧରି ପରଖିଛି । ମୁହଁରେ ଲଗାଇ ସ୍ୱର ଦେଇଛି । ବଇଁଶୀର ସ୍ୱରରେ ବେତ୍ରାହତ ପରି ସହସା ଝପଟି ଆସିଛନ୍ତି ମଞ୍ଚକୁ ରାଜା । ବଇଁଶୀଟିକୁ ଛଡ଼ାଇ ନେଇଛନ୍ତି ମନୋଜଠାରୁ...]

ରାଜା - ନା' ଯୁବକ ନା'... ! ଆଉ କେବେ ଏ ବଇଁଶୀ ସ୍ପର୍ଶ କରିବ ନାହିଁ ।

ମନୋଜ - (କିଛି ବୁଝି ନ ପାରି) ମାନେ ? କ୍ଷମା କରିବେ ମଣିମା । ମୁଁ ଜାଣି ନ ଥିଲି । ଏହାଦ୍ୱାରା ଆପଣ ଯେ ଆଘାତ ପାଇବେ, ଏ କଥା ମୁଁ ଜାଣିଥିଲେ ଆଦୌ ଛୁଇଁ ନ ଥାନ୍ତି । 'କିନ୍ତୁ'...

ରାଜା - ଏ ବଇଁଶୀରେ ସ୍ୱର ଦେବା ଥିଲା ମୋର ଗୋଟାଏ ବିଚିତ୍ର ସଉକ । ଏଇଟା ସୁଭଦ୍ରା ଆଣିଥିଲା । ଏ ସବୁ ଅନେକଦିନ ହୋଇଗଲାଣି । ଆଜି ଏ ବଇଁଶୀ ଭିତରୁ ସ୍ୱର ବାହାରୁ ନାହିଁ କି ସେ ସ୍ୱରରେ ମାଦକତା ନାହିଁ...

ମନୋଜ - ଅନୁମତି ଦେଲେ କିଛି ପଚାରନ୍ତି ।

ରାଜା - ପଚାର ।

ମନୋଜ - ଆପଣ କଳାର ପୂଜାରୀ । ହେଲେ ବଇଁଶୀ ବଜାଇବା ବନ୍ଦ କଲେ କାହିଁକି ?

ରାଜା - ସେଇଟା ମୋର ବ୍ୟକ୍ତିଗତ ବ୍ୟାପାର । ତମର ସେଥିରେ ମଥା ଖେଳାଇବା ଆଦୌ ଉଚିତ ନୁହେଁ । ହଁ, ଆଉ କେବେ ଏମିତି ପ୍ରଶ୍ନ ପଚାରିବନି ।

ମନୋଜ - କ୍ଷମା କରିବେ ମଣିମା ।

ରାଜା - ତମ କାମ ଆଉ କେତେଦିନ ଲାଗିବ ?

ମନୋଜ - ଅତି ବେଶିରେ ଚାରି ପାଞ୍ଚଦିନ ।

ରାଜା - ଠିକ୍ ଅଛି, ତମେ ଯାଇପାର ।

[ମନୋଜ ବାଧ ହୋଇ ବାହାରକୁ ବାହାରିଯାଇଛି । ବନ୍ଧୁକଟିକୁ ଯଥାସ୍ଥାନରେ ରଖି ଦେଇଛନ୍ତି ଭାନୁପ୍ରତାପ । ଆର୍ମଚେୟାର ଉପରେ ବସିଛନ୍ତି । ସିଗାରେଟ୍ ଲଗାଇଛନ୍ତି । କିଛି ସମୟ ପରେ ଭିତରୁ ଆସିଛି କୁମାର । କିପରି କହିବ କିଛି ଭାବିପାରିନି କୁମାର । କୁମାରକୁ ଚାହିଁଛନ୍ତି ରାଜା...]

ରାଜା - କ'ଣ କିଛି କାମ ଥିଲା ?

କୁମାର - 'ହଁ' ।

ରାଜା - ନିଃସଂକୋଚରେ ପ୍ରକାଶ କର ।

କୁମାର - ମୁଁ ଆଜି ରାତି ଗାଡ଼ିରେ ଯାଉଛି ।

ରାଜା - ହଁ... (ଦୀର୍ଘଶ୍ୱାସ) ।

କୁମାର - ଦିଲ୍ଲୀରୁ ଲଣ୍ଡନ ଯିବି ବାର ତାରିଖରେ । ତେବେ ତିନିଦିନ ଦିଲ୍ଲୀରେ ରହିବି ।

ରାଜା - ହଁ.... (କିଛି ଗୁରୁତ୍ୱ ଦେଇ ନାହାନ୍ତି) ।

କୁମାର - କୋର୍ସ କମ୍ପ୍ଲିଟ୍ ପାଇଁ ଆଉ କିଛି ବର୍ଷ ଲାଗିବ ।

ରାଜା - ମନୋଜ ସହିତ ତମର କୋଉଠି ଦେଖା ହୋଇଥିଲା ?

କୁମାର - ଦିଲ୍ଲୀରେ ।

ରାଜା - ଜଣେ ଭଲ ଫଟୋଗ୍ରାଫର ।

କୁମାର - ତା' ଡକୁମେଣ୍ଟାରୀ ଫିଲ୍ମ ପାଇଁ କିଛି ତଥ୍ୟ ଦରକାର ଥିଲା । ସେଇଥିପାଇଁ ତାକୁ ସାଙ୍ଗରେ ନେଇ ଆସିଥିଲି । ହଁ, ମୋର କିଛି-

[ଭାନୁପ୍ରତାପ ଜାଣିଶୁଣି କୁମାର ପ୍ରସଙ୍ଗକୁ ବଦଳାଇବାକୁ ଚାହୁଁଥିଲେ]

ରାଜା - ମନୋଜ ତମ ସାଥିରେ ଫେରିଯିବ ?

କୁମାର - 'ନା' । ମୋ କଥା-

ରାଜା - ଖୁବ୍ ବଢ଼ିଆ ଫଟୋ ଉଠେଇଛି ମନୋଜ । ତମେ ବି ଚାହିଁଲେ ଜଣେ ଭଲ-

କୁମାର - ମୁଁ କ'ଣ ଚାହିଁବି ନ ଚାହିଁବି ସେଇଟା ଅଲଗା କଥା । ହେଲେ ଏବେ ମୋର-

ରାଜା - କୁମାର, ତମେ ରାଜପୁତ୍ର । ବହୁତ ପାଠ ପଢ଼ିଲଣି । ମୋ ବିଚାରରେ ଆଉ ଅଧିକ ପାଠ ପଢ଼ିବା ଦରକାର ନାହିଁ ।

କୁମାର - କ'ଣ କହୁଛନ୍ତି ଆପଣ ?

ରାଜା - ମୁଁ ଯାହା କହିବାକୁ ଚାହୁଁଛି, ତମେ ଠିକ୍ ବୁଝିପାରୁଥିବ । ମୋତେ ଦେଖ । ମୁଁ କେତେ ପାଠ ପଢ଼ିଛି ! ତା'ପରେ ତମେ ତ ଚାକିରି ପାଇଁ ପାଠ ପଢୁନା ।

କୁମାର - ଯଦି ଚାକିରି କରେ, କ୍ଷତି କ'ଣ ?

[ଚିହିଁକି ଉଠିଛନ୍ତି ଭାନୁପ୍ରତାପ । ଚିତ୍କାର କରି ଉଠିଛନ୍ତି ଜୋର୍‌ରେ ।]

ରାଜା - ନା... !

[ଚେୟାରରୁ ଉଠିପଡ଼ି ଗର୍ଜି ଉଠିଛନ୍ତି କୁମାର ଉପରେ ଭାନୁପ୍ରତାପ । କୁମାର କିଛି କହିପାରିନି ।]

ରାଜା - ରାଜପୁତ୍ର ହୋଇ ଜଣେ ସାଧାରଣ ମଣିଷ ଭଳି ତମେ ଚାକିରି କରିବ ! ଅସମ୍ଭବ !

[ରାଗରେ ଥରିଉଠିଛନ୍ତି ଭାନୁପ୍ରତାପ । କ'ଣ କରିବ, କିଛି ସ୍ଥିର କରିପାରିନି କୁମାର]

ରାଜା - ଏ ରାଜବଂଶର ଗୋଟାଏ ସମ୍ମାନ ଅଛି । ତା' ଉପରେ ଆଞ୍ଚ ଆଣିବାକୁ ଚେଷ୍ଟା କରନି । ଚାକିରିଟା ଅନ୍ୟମାନଙ୍କ ପାଇଁ । ରାଜକୁମାର ଅନ୍ୟକୁ ଚାକିରି ଦେଇପାରେ । ମାତ୍ର ଚାକିରି ରାଜକୁମାର କେବେ କରିପାରେନା ।

କୁମାର - କ'ଣ ମିଳିବ ଏ ମିଥ୍ୟା ଅହମିକାରୁ ?

ରାଜା - 'କୁମାର'...

କୁମାର - ସମୟ ବଦଳି ଯାଇଛି । ରାଜଗାଦି ସେମାନେ ଛଡ଼ାଇ ନେଇଛନ୍ତି । ତାରି ସାଥିରେ ରାଜତନ୍ତ୍ର ଲୋପ ପାଇଛି ।

ରାଜା - ହେଲେ, ରାଜା ମରି ନାହିଁ । ସେ ଏ ଯାଏ ବଞ୍ଚିରହିଛି ।

କୁମାର - ଆପଣ ମିଛ କହୁଛନ୍ତି । ରାଜାର ଖୋଳପା ଭିତରେ କେବଳ ବଞ୍ଚିରହିଛି ଗୋଟାଏ ଅହଂକାରୀ ମଣିଷ ।

ରାଜା - 'କୁମାର'

କୁମାର - କ'ଣ ଅଛି ଆପଣଙ୍କ ପାଖରେ ?

ରାଜା - କୁମାର, ତମେ ଭୁଲିଯାଉଛ ଯେ ତମେ ଜଣେ ରାଜା ସହିତ କଥାବାର୍ତ୍ତା କରୁଛ । ରାଜା ପ୍ରଶ୍ନ କରେ । ହେଲେ ରାଜାଙ୍କୁ ପ୍ରଶ୍ନ କରାଯାଏନି ।

କୁମାର - ଆପଣ ହାରିଯିବେ । ଏ ଖିଆଲ ଆପଣଙ୍କର ଭାଙ୍ଗିଯିବ । ସମୟକୁ ସମ୍ମାନ ନ ଦେଲେ ଆପଣ ଅନୁତାପ କରିବେ । କାରଣ ଗଣତନ୍ତ୍ର କଦାପି ଆପଣଙ୍କୁ କ୍ଷମା ଦେବ ନାହିଁ ।

ରାଜା - କୁମାର, ତମେ ଭଲ ଭାବରେ ଜାଣ, ତମେ କାହା ସହିତ କଥାବାର୍ତ୍ତା କରୁଛ । ଏ ରାଜା ଭାନୁପ୍ରତାପ ତମର ପିତା ହେଲେ ବି ଜଣେ ରାଜା ।

କୁମାର - ହଁ...ହଁ...'ରାଜା'... । ପିତୃତ୍ୱର ଗର୍ବ କରିବାଲାଗି କ'ଣ ଅଛି ଆପଣଙ୍କ ପାଖରେ ? ଆଉ 'ରାଜା', ସେ ତ କେତେଗୁଡ଼ାଏ ଫମ୍ପା ଅହଙ୍କାରର ସମଷ୍ଟି ।

ରାଜା - 'କୁମାର'....

କୁମାର - ସିଧାସଳଖ କହୁ ନାହାନ୍ତି, ମୋ ବିଦେଶ ପଢ଼ାର ଖର୍ଚ୍ଚ ଆପଣ ଦେଇପାରିବେନି ! ସତ୍ୟ ପ୍ରକାଶ କରିବାକୁ ଏତେ କୁଣ୍ଠା କାହିଁକି ? ଅସଲ ଜିନିଷ ହେଉଛି, ଯା' ଭିତରେ ଆପଣ ପୂରାପୂରି ଦରିଦ୍ର ହୋଇଯାଇଛନ୍ତି ।

ରାଜା - କୁମାର, ଜାଣ ତମେ ମୋର କେଉଁ ସ୍ଥାନରେ ଆଘାତ କରୁଛ ! ମୁଁ ଚାହିଁଲେ-

କୁମାର - ଆପଣଙ୍କ ଚାହିଁବା ସୀମିତ ହୋଇଯାଇଛି । କାରଣ କ୍ଷମତା, ପ୍ରତିପତ୍ତି, ଅର୍ଥ ସବୁକିଛି ଆପଣଙ୍କଠାରୁ କାଢ଼ି ନିଆଯାଇଛି । ନିଜସ୍ୱ ଖୋଳପା ଭିତରେ ବଞ୍ଚିଥିବା ଗୋଟାଏ କ୍ଷୁଦ୍ର ପ୍ରଜାପତି ଆପଣ....

ରାଜା - 'କୁମାର'...

କୁମାର - ବାସ୍ତବ ଚେହେରାଟା ଆଖି ସାମନାକୁ ଆସିଗଲାରୁ ଏତେ ଭୟ କାହିଁକି ?

ରାଜା - ଏ ସବୁ ହଉଛି ସେଇ ସୁଭଦ୍ରାର ଚାଲ । ମାମୁଘରୁ କେତେଟା ଟଙ୍କା ପାଉଛ ବୋଲି ତମେ ଧରାକୁ ସରା ଜ୍ଞାନ କରୁଛ... !

କୁମାର - ସେମାନଙ୍କୁ କାହିଁକି ଦୋଷ ଦଉଛନ୍ତି ? କ'ଣ ଦୋଷ ଥିଲା ମା'ଙ୍କର ? କ'ଣ ପାଇଁ... କାହିଁକି ସେ ରାଜବାଟୀ ଛାଡ଼ି ଚାଲିଗଲେ ?

ରାଜା - ସେଇଟା ଥିଲା ତାଙ୍କର ମସ୍ତବଡ଼ ଭୁଲ୍ । କାରଣ ଏ ବଂଶର ଗୋଟାଏ ଅଲିଖିତ ସମ୍ବିଧାନ ରହିଛି । ତା'କୁ ସମସ୍ତେ ମାନିବାକୁ ବାଧ । ମୋ ବିନା ଅନୁମତିରେ ଏ ରାଜବାଟୀରୁ ଯିଏ ଥରେ ପାଦ କାଢ଼ିଛି, ତା'ପାଇଁ ଚିରଦିନ ଲାଗି ଏ ରାଜବଂଶର ଦ୍ୱାର ନିଷିଦ୍ଧ ।

କୁମାର - ହଁ, ସେଇଠି ଆପଣ କରିବସିଲେ ଭୁଲ୍ । କାରଣ ଆପଣ ଖାଲି ଜଣେ 'ରାଜା' ହୋଇ ରହିଗଲେ । ଭଲ ପତିଟିଏ କିମ୍ବା ଆଦର୍ଶ ପିତାଟିଏ ବି ହୋଇପାରିଲେନି ।

[ରାଗରେ ଝପଟି ଆସିଛନ୍ତି ମାରିବାକୁ କୁମାରକୁ]

ରାଜା - 'କୁମାର'...

କୁମାର - ଅଟକିଗଲେ କାହିଁକି ?

ରାଜା - ମୁଁ ଜାଣି ନ ଥିଲି, ତମେ ଏତେ ତଳସ୍ତରକୁ ଚାଲିଯିବ ବୋଲି !

କୁମାର - ସତ୍ୟଟା ଖୁବ୍ କଷ୍ଟଦାୟକ ହେଉଛି ନା ?

ରାଜା - ବିଦେଶୀ ପାଠଟା ତମ ମଥାଟାକୁ ପୂରାପୂରି ଖରାପ କରିଦେଇଛି । ଆଉ ଦରକାର ନାହିଁ । ବହୁତ ହୋଇଗଲା । ହଁ, ଏତିକିରୁ ତମ ପାଠପଢ଼ା ବନ୍ଦ । ଆଜିଠାରୁ...

କୁମାର - କ'ଣ ଏଇଟା ବି ଆଦେଶ ?

ରାଜା - ହଁ...ହଁ...ଆଦେଶ ! ରାଜା ଭାନୁପ୍ରତାପର ଆଦେଶ । ତମର ବିଦେଶ ଯିବା ବନ୍ଦ ।

କୁମାର - କୂଅ ବେଙ୍ଗ ପାଇଁ କୂଅ ଭିତରର ଇଲାକାଟି ହିଁ ସବୁକିଛି । କୂଅ ବାହାରେ ଯେ ଆଉ ଗୋଟାଏ ଦୁନିଆ ଅଛି, ସେ କଥା ସେ ଜାଣିପାରେନା ।

ରାଜା - 'କୁମାର'...

କୁମାର - ଚିତ୍କାର କରି କିଛି ଲାଭ ନାହିଁ । ମୁଁ ଚାଲିଲି । ଗୁଡ୍ ବାଏ... । (ପ୍ରସ୍ଥାନ)

ରାଜା - 'କୁମାର'...

[ରାଗରେ ଥରୁଥିଲେ ରାଜା ଭାନୁପ୍ରତାପ । ମଞ୍ଚ ଧୀରେ ଧୀରେ ଅନ୍ଧକାର ହୋଇଆସିଛି ।]

## ପଞ୍ଚମ ଦୃଶ୍ୟ

ସ୍ଥାନ - ରୟାଲ ଡ୍ରଇଂରୁମ୍
ସମୟ - ପୂର୍ବାହ୍ନ । ଏଗାରଟା ସମୟ
ଚରିତ୍ର - ଦେଓ୍ୱାନ୍, ବୁଲୁ, ରାଜା, ରଙ୍କ

[ରାଜାଙ୍କର ପୂର୍ବର ସେହି ଡ୍ରଇଂରୁମ୍ । ସାଜସଜା ମଧ ପୂର୍ବପରି ଅପରିବର୍ତ୍ତିତ । ରାଜା ଭାନୁପ୍ରତାପ ଗୃହରେ ଅନୁପସ୍ଥିତ ଅଛନ୍ତି । ଇତ୍ୟବସରରେ ଆସିଛନ୍ତି ଦେଓ୍ୱାନ... । ଭିତରକୁ ଯାଇଛନ୍ତି । ପୁଣି ଫେରିଆସିଛନ୍ତି ମଞ୍ଚକୁ...]

ଦେଓ୍ୱାନ - କୁଆଡ଼େ ଗଲେ ?

[ବିବ୍ରତ ଅବସ୍ଥାରେ ପଦଚାଳନା କରୁଥିବାବେଳେ ବାହାରୁ ଆସିଛି ବୁଲୁ । ଦେଓ୍ୱାନଙ୍କର ପୁଅ, ଯେ କି କଲେକ୍ଟର ହୋଇଛି]

ବୁଲୁ - ବାବା, ବଗିଚାରେ ପାଇଲିନି ।

ଦେଓ୍ୱାନ - ମାର୍କେଟ ଆଡ଼େ ଗଲେ କି ?

ବୁଲୁ - 'ରଙ୍କ' ?

ଦେଓ୍ୱାନ - ତାର ବି ଦେଖା ମିଳୁନି । ଏଇଠି କୋଉଠି ନିଶ୍ଚୟ ଥିବ ।

ବୁଲୁ - ମୁଁ ଆଉ ଅଧିକ ସମୟ ଅପେକ୍ଷା କରିପାରିବିନି ।

ଦେଓ୍ୱାନ - ମଣିମା ଏଇ ପାଖାପାଖି କୋଉଠି ଥିବେ । ସାଙ୍ଗେ ସାଙ୍ଗେ ଆସି ପହଞ୍ଚିବେ ।

ବୁଲୁ - ଏଗାରଟା ବାଜିଛି । ମୁଁ ପରେ ଆସିବି ।

ଦେଓ୍ୱାନ - ତୁ ଆଦୌ ବୁଝିପାରୁନୁ । ଏତେଦିନ ପରେ ମଣିମା ତୋତେ ଦେଖିଲେ ଯେ କେତେ ଖୁସି ହେବେ... ।

[କ'ଣ କରିବ କିଛି ସ୍ଥିର କରିପାରିନି ବୁଲୁ]

ଦେଓ୍ୱାନ - କ'ଣ ଭାବୁଛୁ ?

ବୁଲୁ - ସାଢ଼େ ଏଗାର୍‌ଟାରେ ଗୋଟାଏ ଅର୍ଜେଣ୍ଟ ମିଟିଂ ଅଛି । ବାତ୍ୟା ବିଷୟରେ । ସମସ୍ତେ ଆସି ପହଞ୍ଚି ସାରିଥିବେ । ମୁଁ ନ ରହିବାଟା ଠିକ୍ ହେବନି । ହଁ, ତମେ ବରଂ ମଣିମାଙ୍କୁ ବୁଝେଇଦବ । ମୁଁ ପରେ କେତେବେଳେ ଆସି ତାଙ୍କୁ ଦେଖା କରି ଯିବି ।

ଦେଓ୍ୱାନ - ଠିକ୍ ଅଛି । ମୁଁ କହିଦେବି । ହେଲେ ନିଶ୍ଚୟ ଆସିବୁ ।

[ବୁଲୁ ଚାଲିଯାଇଛି । ଦେଓ୍ୱାନ ଆଖି ବୁଲାଇଛନ୍ତି ଡ୍ରଇଂରୁମ ଉପରେ । ବାହାରୁ ଆସିଛନ୍ତି ରାଜା ଭାନୁପ୍ରତାପ । ସାଷ୍ଟାଙ୍ଗ ପ୍ରଣିପାତ କରିଛନ୍ତି ଦେଓ୍ୱାନ । ବିସ୍ମିତ ହୋଇଛନ୍ତି ରାଜା ଏତେ ଦିନ ପରେ ଦେଓ୍ୱାନକୁ ନିଜ ଘରେ ଦେଖି]

ରାଜା - ଉଠ...ଉଠ... । ଦେଓ୍ୱାନ, ଏତେ ଦିନ ପରେ ଏ ଭାନୁପ୍ରତାପ କଥା ମନେପଡ଼ିଲା ?

ଦେଓ୍ୱାନ - ମଣିମା, ମୋର କ'ଣ ଆସିବାକୁ ମନ ନାହିଁ ! ହେଲେ କୋଉ ଆସି ହଉଛି ! ସଦାବେଳେ ସେଇ କାମ...କାମ... !

ରାଜା - 'କାମ'... ! ଏଠୁ ଗଲା ପରେ ବି କାମ ! ତିନିତିନିଟା ପୁଅ ଚାକିରି କରୁଛନ୍ତି । ସେମାନଙ୍କ ପାଖରେ ବସି କିଛିଦିନ ବିଶ୍ରାମ ନିଅ । ଯଥେଷ୍ଟ ଖଟିଛ ।

ଦେଓ୍ୱାନ - ବସି ଖାଇବାକୁ ଭଲ ଲାଗୁନି । ସମସ୍ତେ ଅଫିସ୍ ଚାଲିଯିବେ । ଘର ଭିତରଟାରେ ମୁଁ ଏକା ଏକା ବସି.... । ତା'ପରେ ସାରା ଜୀବନ ଯେ ଖଟି ଖଟି ଆସିଛି, ତାକୁ ବସି ଖାଇବାକୁ କୁଆଡୁ ବା ଭଲ ଲାଗିବ !

ରାଜା - ମୁଁ ଜାଣେ, ମୋ ହାତଗଢ଼ା ପ୍ରତ୍ୟେକଟି ମଣିଷ ଯେତିକି କର୍ମଠ, ସେତିକି ସଚ୍ଚୋଟ । ଆରାମ୍ ସେମାନଙ୍କ ପାଇଁ ହାରାମ୍ । ମୋ ଲୋକ କୌଣସି କ୍ଷେତ୍ରରେ କେବେ ହାରିନି କି ହାରିବ ନାହିଁ ।

[ମନେ ମନେ ଖୁବ୍ ଖୁସି ହେଉଥିଲେ ରାଜା ଭାନୁପ୍ରତାପ । ମୁଖମଣ୍ଡଳରେ ହସର ଲାଳିମା]

ଦେଓ୍ୱାନ - ଏଠୁ ଗଲା ପରେ ଛ'ମାସ କାଳ ମୁଁ ଶାନ୍ତିରେ ଶୋଇପାରିନି । ସବୁବେଳେ ରାଜବାଟୀ କଥା...ଆପଣଙ୍କ କଥା ମନେପଡ଼େ । କ'ଣ ବା କରିପାରିବି ?

ରାଜା - ଏଠି ରହି କେତେକାଳ ଆଉ ଛଟପଟ ହେଇଥାନ୍ତ ? କ'ଣ ବା ମୋ ପାଖରେ ଅଛି ? ସମସ୍ତେ ଯାଇଛନ୍ତି । ମନ୍ତ୍ରୀ, ସେନାପତି, କଟୁଆଳ କେହି ନାହାନ୍ତି । ଏଠି କେବଳ ପଡ଼ିରହିଛି ଗୋଟାଏ ପୁରୁଣା ମଣିଷ... ନିଜର ଅର୍ଦ୍ଧଭଗ୍ନ ସ୍ୱାସ୍ଥ୍ୟ ଆଉ ଅନ୍ଧ ଆଭିଜାତ୍ୟକୁ ଜାବୁଡ଼ି ଧରି ।

ଦେଓ୍ୱାନ - ନା' ମଣିମା ନା' । ସେମିତି କୁହନ୍ତୁ ନାହିଁ । କର୍ପୂର ସିନା ଯାଇଛି, ହେଲେ କନା ଏବେବି ପଡ଼ି ରହିଛି । ସେ କନାରୁ ମହକ କେବେ ଯିବନି । କନାଖଣ୍ଡିକ ଥିବା ପର୍ଯ୍ୟନ୍ତ ରାଜବାଟୀ ଥିବ... ରାଜା ଥିବେ... !

ରାଜା - ନିଜକୁ ଅନେକ ସାନ୍ତ୍ୱନା ଦେଇଛି । ହେଲେ-

ଦେଓ୍ୱାନ - ମଣିମା, ଏ ଦେଓ୍ୱାନ ଆପଣଙ୍କ ଲୁଣ ଖାଇଛି । ସେ କେବେ ବେଇମାନ ହବନି । କେହି ନ ରୁହନ୍ତୁ । ମୁଁ ଏଠି ରହିବି । ଏକଲା... ହଁ... ଏକା... ।

ରାଜା - ସବୁ ଅଭ୍ୟାସରେ ପଡ଼ିଗଲାଣି । ଦେହସୁହା ହୋଇଯାଇଛି । ରଙ୍କଟା କୁଆଡ଼େ ଯେ ଗଲା ।

ଦେଓ୍ୱାନ - ଏଇଠି କୋଉଠି ଥିବ । କ'ଣ ଆଣିବି ମଣିମା ?

ରାଜା - ଆରେ ଏତେ ଦିନ ପରେ ତମେ ଆସିଛ । ରଙ୍କ, ଆରେ ଚା' ଆଣ... । ଦେଓ୍ୱାନଙ୍କ ପାଇଁ ଟିଫିନ୍ ଆଣ... ।

ଦେଓ୍ୱାନ - ସେ ସବୁ କ'ଣ ହବ ମଣିମା ! ଆପଣଙ୍କ ଦର୍ଶନ ପାଇଛି । ବାସ୍, ସେତିକି ମୋ ପାଇଁ ନିର୍ମାଲ୍ୟ । ଚା' ଜଳଖିଆ କ'ଣ ହବ ? ମଣିମା, ରଙ୍କ ତାହେଲେ ଏକା- ?

ରାଜା - ହଁ, ସେଇ ଏକା ମୋ ସୁଖଦୁଃଖର ସାଥୀ । ଯେତେ କହିଲେ ବି ସେ ଯାଉନି କି ଯିବ ନାହିଁ ।

[ଭିତରୁ ଦୁଇଟି କାଚଗ୍ଲାସରେ ନାଲି ଚା' ଧରି ଆସିଛି ରଙ୍କ । ଦେଓ୍ୱାନ ଚାହିଁ ରହିଛନ୍ତି]

ରଙ୍କ - ହୁହାରେ ଦେଓ୍ୱାନ ସାହେବ !

ଦେଓ୍ୱାନ - ତୁ ଏକା ଭାଗ୍ୟବାନ୍‌ରେ ! ଆମେ ତ ସବୁ ହତଭାଗ୍ୟ । କେହି ଜଣେ ବି ମଣିମାଙ୍କ ସେବା କରିବାର ସୁଯୋଗ ପାଇପାରିଲୁନି ।

[ଚା' ଦେଇଛି ମଣିମା ଏବଂ ଦେଓ୍ୱାନଙ୍କୁ । ନାଲି ଚା'କୁ ଦେଖି ଦେଓ୍ୱାନ କିଛି ଗୋଟାଏ ଚିନ୍ତା କରିଛନ୍ତି । ଭାନୁପ୍ରତାପ ଦେଓ୍ୱାନଙ୍କ ମାନସିକ ଅବସ୍ଥାକୁ ବୁଝିପାରିଛନ୍ତି]

ରାଜା - ବୟସ ହେଇଗଲାଣି । ସ୍ୱାସ୍ଥ୍ୟ ଭଲ ରହୁନି । ଡାକ୍ତର କ୍ଷୀର ଚା' ପିଇବାକୁ ମନା କରିଛନ୍ତି ।

ଦେଓ୍ୱାନ - ଆରେ ରଙ୍କ, ଏ ସବୁ କେବେଠାରୁ ?

ରାଜା - ତୁ ଯା (ରଙ୍କକୁ) । ଦେଓ୍ୱାନଙ୍କ ପାଇଁ....

[ଚାଲିଯାଇଛି ଭିତରକୁ ରଙ୍କ । ଚାହିଁରହିଛନ୍ତି ତାଙ୍କ ଯିବା ବାଟକୁ ଦେଓ୍ୱାନ]

ରାଜା - ଅନେକ ଦିନ ହୋଇଗଲାଣି । ତା'ପରେ ଏ ନାଲିଚା'ଟା ମଧ ମତେ ଆରେଇ ଗଲାଣି । ଥରେ ଅଭ୍ୟାସରେ ପଡ଼ିଗଲେ ଆଉ ଅସୁବିଧା କ'ଣ... ।

ଦେଓ୍ୱାନ - ବହୁତ ବଦଳି ଯାଇଛନ୍ତି ।

ରାଜା - ଆରେ ନାଲି ଚା'ଟା ତମର ଚଳିବ ତ, ଦେଓ୍ୱାନ ?

ଦେଓ୍ୱାନ - ମଣିମା, ଆପଣ ଖାଇପାରୁଛନ୍ତି । ଆଉ ମୁଁ ପାରିବିନି ! କଲିକ୍ ବେମାରିଟା ବାହାରିଛି । ବାହାର ଖାଇବା ବନ୍ଦ । ମାଛମାଂସ, ତେଲ ମସଲା ଛାଡ଼ । ତା'ପରେ ନାଲିଚା' ତ ଅତି ଉତ୍ତମ । ସ୍ୱାସ୍ଥ୍ୟ ପକ୍ଷେ ବି ଭଲ ।

ରାଜା - ଆରେ ଦେଓ୍ୱାନ, ପିଲାଏ କ'ଣ କରୁଛନ୍ତି ? କୋଉଠି ଅଛନ୍ତି ?

ଦେଓ୍ୱାନ - ମଣିମା, ମୁଁ ପୂରାପୂରି ଭୁଲିଯାଇଛି କହିବାକୁ । ବୁଲୁଟା ଆଇ.ଏ.ଏସ୍. ପାଇଛି । ଏଇନେ କଲେକ୍ଟର ।

ରାଜା - 'ଆଇ.ଏ.ଏସ୍'... ! (ଖୁସିରେ)

ଦେଓ୍ୱାନ - ହଁ ମଣିମା । ସିଏ ଆମର ଏଇଠି ପୋଷ୍ଟିଙ୍ଗ୍ ହେଇଛି । ଏବେ ଟ୍ରାନ୍ସଫର ହେଇ ଆସିଛି ।

ରାଜା - 'ବୁଲୁ'... ! ଠିକ୍ ମନେପଡୁନି, କୋଉଟା । ମଝିଆଁ... ନା' ସାନ ?

ଦେଓ୍ୱାନ - ସବା ସାନ ପିଲାଟା, ଯିଏ ଆପଣଙ୍କ ବାଡ଼ି ବୋହୁଥିଲା ।

ରାଜା - ଆରେ ତାକୁ କହିବ, ମତେ ଟିକେ ଦେଖା କରିବ । ମୋ ଦେଓ୍ୱାନର ପୁଅ କଲେକ୍ଟର । ମୋ ପିଲାସବୁ କଲେକ୍ଟର । ୟା'ଠାରୁ ବଳି ଆଉ ଖୁସିର ଖବର କ'ଣ ଅଛି !

ଦେଓ୍ୱାନ - ବୁଲୁ ଆସିଥିଲା ମଣିମା । ଗୋଟାଏ କ'ଣ ଅର୍ଜେଣ୍ଟ ମିଟିଂ ଥିଲା, ସେଇଥିଲାଗି ଚାଲିଗଲା । ଆସିବ । କହିଯାଇଛି ।

ରାଜା - ଏତେ ଦିନ ପରେ ପିଲାଟା ଆସିଥିଲା, ଖାଲି ଖାଲି ଫେରିଗଲା । ଏଇଟା ତମେ ଠିକ୍ କଲନି ଦେଓ୍ୱାନ । ଅନ୍ୟାୟ... ଘୋର ଅନ୍ୟାୟ... ।

ଦେଓ୍ୱାନ - ମଣିମା, ଜବାବ ଦେଇଯାଇଛି । ନିଶ୍ଚୟ ଆସିବ । ଖୁସିରେ ତା' ମା' ଏ ମିଠା ପ୍ୟାକେଟ୍ ପଠେଇଛି ।

ରାଜା - ଆରେ ମୁଁ ସିନା ତମକୁ ମିଠା ଖୁଆଇବା କଥା ।

ଦେଓ୍ୱାନ - ଏକା କଥା । ସିଏ ବି ତ ଆପଣଙ୍କ ପିଲା ।

[ରାଜାଙ୍କ ପାଟିରେ ଗୋଟିଏ ମିଠା ଭରିଦେଇଛି ଦେଓ୍ୱାନ]

# ଷଷ୍ଠ ଦୃଶ୍ୟ

ସ୍ଥାନ - ରୟାଲ ଡାଇନିଂ ରୁମ୍
ସମୟ - ଅପରାହ୍ଣ
ଚରିତ୍ର - ରାଜା, ରଙ୍କ

[ରୟାଲ ଡାଇନିଂ ରୁମ୍ । ପଡ଼ିଛି ଡାଇନିଂ ଟେବୁଲ, ଦୁଇଟି ଚେୟାର । ରାଜା ପକେଟ୍ରୁ ବିଡ଼ିକଠା ବାହାର କରିଛନ୍ତି । ଗୋଟିଏ ବିଡ଼ିରେ ଅଗ୍ନି ସଂଯୋଗ କରି ଟାଣିଛନ୍ତି । ପୁଣି ବିଡ଼ିକଠାଟି ପକେଟରେ ରଖି ଦେଇଛନ୍ତି । ମନଖୁସିରେ ଧୂଆଁ ଛାଡ଼ି ଚାଲିଛନ୍ତି । ବାହାରୁ ରଙ୍କର ପାଟି ଶୁଭିଛି...]

ରଙ୍କ - (ବାହାରୁ) ଭୂତଖାନା ତ... ଯିଏ ଯେତେବେଳେ ଚାହିଁବ ପଶିଆସିବ ।

[ରାଜା ରଙ୍କର ପାଟି ଶୁଣି ବିଡ଼ିଟିକୁ ପାଦରେ ଦଳି ଲିଭାଇ ଦେଇଛନ୍ତି । ମଞ୍ଚକୁ ଆସିଛି ରଙ୍କ]

ରାଜା - କ'ଣ ହେଲା... କାହା ଉପରେ ଏମିତି ଗରଗର ହଉଛୁ ?

ରଙ୍କ - ହେବିନି... ! ଏଇଟା କ'ଣ ସାହାଣ ମେଲା ଘର ହେଇଛି, ଯିଏ ଯାହା ପାଇବ, ଉଠେଇ ନେଇଯିବ ।

ରାଜା - କ'ଣଟା... କିଏ ନେଇଛି ?

ରଙ୍କ - ମୋ ବିଡ଼ିକଠାଟା ପାଉନି, ମଣିମା ।

[ରାଜାଙ୍କ ଚାହାଣିରେ ପରିବର୍ତ୍ତନ ଦେଖାଯାଇଛି । ନିଜର ଭାବକୁ ଲୁଚାଇବାକୁ ଚେଷ୍ଟା କରିଛନ୍ତି ରାଜା]

ରାଜା - ଆରେ ମନେପକା । କୋଉଠି ରଖିଦେଇଥିବୁ ।

ରଙ୍କ - ସବୁ ଜାଗା ଖୋଜି ସାରିଲିଣି । ପାଉନି.... ।

ରାଜା - ଆଉ ତା'ହେଲେ ବିଡ଼ିକଠାଟା ଗଲା କୁଆଡ଼େ !

ରଙ୍କ - ମୁଁ ନ ଥିଲାବେଳେ ମୋ ବସା ଆଡ଼େ କିଏ ବୁଲାବୁଲି କରିବାକୁ ଆସିଥିଲା କି ମଣିମା ?

ରାଜା - ନା' କେହି ଆସି ନାହାନ୍ତି ।

ରଙ୍କ - ସବୁଦିନ ତ ସେଇ ଗୋଟିଏ ଜାଗାରେ ରଖେ... । କାହାକୁ କେତେ ଲାଗିବ ଯେ....

ରାଜା - ରଙ୍କ, ଦେହଟା ଆଜି କେମିତି...

ରଙ୍କ - ବୁଲିବାକୁ ଯିବେନି ?

ରାଜା - ନା'... ଦେହଟା ଭଲ ଲାଗୁନି ।

ରଙ୍କ - ଡାକ୍ତର ଡାକି ଆଣିବି ?

ରାଜା - ନା' ! କ'ଣଟା ହେଇଛି ଯେ ଡାକ୍ତର ଡାକିବୁ ।

ରଙ୍କ - ମଣିମା, ଡାକ୍ତର ମହାପାତ୍ର ଆମ ଲୋକ । ପଇସାପତ୍ର ନେବେନି । ମୁଁ ଯାଉଛି, ଡାକିଆଣେ ।

ରାଜା - ଆରେ ଥଣ୍ଡାରୁ ମଥାଟା ଟିକେ ଘୂରୁଛି । ବଳେ ଠିକ୍ ହୋଇଯିବ ।

ରଙ୍କ - ତା'ହେଲେ, ଚାଲନ୍ତୁ ଶୋଇପଡ଼ିବେ । ମୁଁ ଦେହ ହାତ ଚିପିଦେବି ।

[ରାଜା ଚେୟାର ଉପରେ ବସିପଡ଼ିଲେ । ରଙ୍କ ହାତ ମୋଡୁଥିଲା]

ରାଜା - ପୋଷ୍ଟଅଫିସ ଯାଇଥିଲୁ ?

ରଙ୍କ - ହଁ । ଆଜି ବି ମନିଅର୍ଡର ଆସିନି ।

ରାଜା - ପ୍ରଥମ ସପ୍ତାହରେ ଆସିବା କଥା... !

ରଙ୍କ - ମଣିମା, କିଛି ଜଣାପଡ଼ିଲା ? ମନିଅର୍ଡର କିଏ ପଠାଉଛି... କାହିଁକି ପଠଉଛି... !!

ରାଜା - କ'ଣ ଦରକାର, ବୁଝିବା ? ମିଳୁଛି, ବଡ଼କଥା । ସେତିକି ଆମପାଇଁ ଯଥେଷ୍ଟ.... ।

ରଙ୍କ - ହଁ, ପତର ଗୋଟାଇଲା ଲୋକର ତୋଟା ମୂଳ ବୁଝିବା କ'ଣ ଦରକାର ?

ରାଜା - ହଁ... [ଦୀର୍ଘଶ୍ୱାସ ଛାଡ଼ିଛନ୍ତି]

ରଙ୍କ - ମଣିମା ! ବିନା ସାଉର ଦୋକାନ ବାକି ପନ୍ଦରହଜାର ହୋଇଗଲାଣି

ରାଜା - କ'ଣ ସେ ଚାହୁଁଛି ?

ରଙ୍କ - ଟଙ୍କା ମାଗୁଥିଲା ।

ରାଜା - ହଁ... ! ସମସ୍ତଙ୍କର ଟଙ୍କା ଦରକାର ।

ରଙ୍କ - ବେଣ୍ଟପୋଖରୀଟା ଉପରେ ତାର ଆଖି ପଡ଼ିଛି ।

ରାଜା - ଠିକ୍ ଅଛି, ଦେଇଦବା ।

ରଙ୍କ - ମଣିମା, କେଇଟା ଟଙ୍କାପାଇଁ....ଏତେ ବଡ଼ ପୋଖରୀଟା ତା' ହାତକୁ ଟେକିଦେବେ ?

ରାଜା - ଜୀବନରେ ବହୁତ ପରିଶ୍ରମ କରିଛି । କିଛି ପାଇନି । ସିଏ କିଛି ପାଉ । ଆମର ତ ଯଥେଷ୍ଟ ଅଛି । ଅଧା ଯାଇଛି... ଆହୁରି ଅଛି... ।

ରଙ୍କ - ଯାହା ଉଚିତ ଭାବିବେ, କରନ୍ତୁ । ମୁଁ କିଏ କହିବାକୁ ?

ରାଜା - ଗଲୁ, ନାଲି ଚା' କପେ ଆଣିବୁ ।

ରଙ୍କ - ଏଇ ସାଙ୍ଗେ ସାଙ୍ଗେ ଆଣୁଛି । ମଣିମା, ମୁଁ କ'ଣ କହୁଥିଲିକି, ବେଣ୍ଟ ପୋଖରୀଟା ନ ଦେଇ....

[ଚାଲିଯାଇଛି ଭିତରକୁ ରଙ୍କ । ନିଜର ଭାବନା ଭିତରେ ବୁଡ଼ିଯାଇଛନ୍ତି ରାଜା]

ରାଜା - ମାଣିଆବନ୍ଧ ଯାଇଛି ! ସୁନାଗାଡ଼ିଆ ଯାଇଛି ! କେବେଠାରୁ ସାଧବନ୍ତୁଠ ଗଲାଣି । ପଡ଼ିରହିଛି ରାଣିଆବନ୍ଧ ଆଉ ବେଣ୍ଟପୋଖରୀ । ବେଣ୍ଟପୋଖରୀ ଯିବ । ଆଉ ତା'ପରେ ରାଣିଆବନ୍ଧ....

[ରାଜାଙ୍କ ମୁଖମଣ୍ଡଳରେ କୁଟିଳ ରେଖା ଏବଂ ଅନେକ ପ୍ରଶ୍ନବାଚୀ, ଯାହାର ଉତ୍ତର ଖୋଜିପାଇବା ଅସମ୍ଭବ...]

# ସପ୍ତମ ଦୃଶ୍ୟ

ସ୍ଥାନ - ରୟାଲ ଡ୍ରଇଂରୁମ
ସମୟ - ବଡ଼ି ଭୋର
ଚରିତ୍ର - ଅହଲ୍ୟା, କୁମାର

[ରୟାଲ ଡ୍ରଇଂରୁମ୍ । ରାଜା ତିନିଦିନ ପାଇଁ ବାହାରକୁ ଯାଇଥିବାରୁ ରାଜବାଟୀରେ ନୀରବତା । ଇତ୍ୟବସରରେ ଆସିଛନ୍ତି କୁମାର । ସାଥିରେ ଆସିଛନ୍ତି ତାଙ୍କର ପ୍ରେମିକା ଅହଲ୍ୟା । ରାଜାଙ୍କ ଅନୁପସ୍ଥିତିରେ ସେମାନେ ଆସି ପହଞ୍ଚିଛନ୍ତି ।

ବଡ଼ିଭୋର ସମୟ । ବ୍ରାହ୍ମ ମୁହୂର୍ତ୍ତ । ଅହଲ୍ୟା ଡ୍ରଇଂରୁମ୍‌ରେ ନୃତ୍ୟ ଅଭ୍ୟାସ କରୁଛି । ନୃତ୍ୟ ମଝିରେ ଭିତରୁ ଆସିଛନ୍ତି କୁମାର । ନୃତ୍ୟ ବନ୍ଦ କରିଛି ଅହଲ୍ୟା ।]

କୁମାର - ଚମତ୍କାର... ! ଚମତ୍କାର... !

[କରତାଳି ମାରି ମାରି ଭିତରୁ ଆସିଛନ୍ତି କୁମାର]

ଅହଲ୍ୟା - ତମେ କେତେବେଳେ ଉଠିଲ ?

କୁମାର - ଏହି ସାଙ୍ଗେ ସାଙ୍ଗେ ।

ଅହଲ୍ୟା - ଏତେ ଚଞ୍ଚଳ କାହିଁକି ଉଠିପଡ଼ିଲ ?

କୁମାର - ତମର ଏ ନାଚ କାହାକୁ ଶୋଇବାକୁ ଦବ ଯେ...

ଅହଲ୍ୟା - ଚା’ କରି ଆଣେ ।

କୁମାର - କିଛି ତ ନ ଥିବ ।

ଅହଲ୍ୟା - କିଚେନ୍‌ରେ ଚା’ଚିନି ଅଛି । କ୍ଷୀର ନ ଥିଲା ।

କୁମାର - ରଙ୍କ ଥିଲେ କ୍ଷୀର ପାଇଁ ପଠାଇଥାନ୍ତେ । ସେ ବି ନାହିଁ । ତିନି ଦିନ ପରେ ସମସ୍ତେ ଫେରିବେ ।

ଅହଲ୍ୟା - ତା’ହେଲେ ଦେଖା ହେଇପାରିବନି ?

କୁମାର - ନା'.. ତା'ପରେ ଆମର ତ ଟିକେଟ ହେଇଯାଇଛି । ଆଉ ଅପେକ୍ଷା କରିହବନି ।

ଅହଲ୍ୟା - ଭାରି ଇଚ୍ଛା ଥିଲା, ମଣିମାଙ୍କୁ ଥରେ-

କୁମାର - ତମେ ଯାହା ଭାବୁଛ, ସିଏ କିନ୍ତୁ ଠିକ୍ ଓଲଟା । ନିଜର ଅହଙ୍କାର ଭିତରେ ବଞ୍ଚିବା ଛଡ଼ା ତାଙ୍କ ପାଖରେ ଆଉ କିଛି ନାହିଁ ।

ଅହଲ୍ୟା - ଅନ୍ତତଃ ଆମେ ତ ବୁଝେଇ ପାରିବା !

କୁମାର - ରାଜାମାନେ ଚିରକାଳ ଅବୁଝା । ଅନ୍ୟର ମନକୁ ତଉଲିବା ଶକ୍ତି ସେମାନଙ୍କର ନାହିଁ ।

ଅହଲ୍ୟା - ତଥାପି ଚେଷ୍ଟା କରିବାରେ କ୍ଷତି କ'ଣ ?

କୁମାର - କ୍ଷତବିକ୍ଷତ ହୋଇଯିବ । ତମେ ଭାବୁଛ ସେ ଏ ବିବାହକୁ ସ୍ୱୀକୃତି ଦେବେ ?

ଅହଲ୍ୟା - ମୋ ମନ କହୁଛି, ସେ ନିଶ୍ଚୟ ବଦଳିବେ ।

କୁମାର - ନା'... ତମେ ହାରିଯିବ । ତାଙ୍କ ଭିତରୁ ରାଜାର ଝୁଙ୍କଟା ଏଯାଏ ଛାଡ଼ିନି । ସେ କେବେ ତମକୁ ଗ୍ରହଣ କରିବେନି ।

ଅହଲ୍ୟା - ସଦାବେଳେ ତମର ଅମଙ୍ଗଳ ଭାବନା । ମୋର ଧାରଣା, ମୁଁ ନିଶ୍ଚୟ ତାଙ୍କର ଭ୍ରମ ଧାରଣା ଦୂର କରିପାରିବି ।

କୁମାର - ସେ ନୃତ୍ୟକୁ ତାରିଫ୍ କରନ୍ତି, ହେଲେ ନର୍ତ୍ତକୀକୁ ନୁହେଁ । ବିଚିତ୍ର ଖିଆଲୀ ମଣିଷ !

ଅହଲ୍ୟା - ଦେଖାହେଲେ ମୁଁ ନିଶ୍ଚୟ ତାଙ୍କର ସେ ଝୁଙ୍କ୍ ଭାଙ୍ଗିଦେବି ।

କୁମାର - ସେତିକି ଯଦି କରିପାରିବ, ତା'ହେଲେ ତମେ ତାଙ୍କୁ ଜିତିଯିବ । ଆଉ କେବେ କ୍ଷତାକ୍ତ ହେବାକୁ ପଡ଼ିବନି ।

ଅହଲ୍ୟା - ତମେ ବସ । ମୁଁ ଚା' କରି ଆଣେ ।

କୁମାର - ହଁ, କହିଲନି । କେମିତି ଲାଗୁଛି ଆମ ରାଜପ୍ରାସାଦ ?

ଅହଲ୍ୟା - କେହି ନାହାନ୍ତି ଯେତେବେଳେ, କିଏ ଆଉ ଏତେ ବଡ଼ ପ୍ରାସାଦର ଯତ୍ନ ନେବ !

କୁମାର - ଓ, ନିର୍ଜନତାକୁ ଦେଖି ତମେ ଡରିଯାଉଛ । ଥରେ ଭାବି ଦେଖ, ଯେଉଁ ଲୋକଟା ଏଠି ଏକଲା ପଡ଼ିରହିଛି... ତା' କଥା... ।

ଅହଲ୍ୟା - ସତରେ, ଏକାକୀ ଚଳିବା ଭାରି କଷ୍ଟ । ନିର୍ଜନତାଠାରୁ ଆଉ ବଡ଼ ଶତ୍ରୁ କିଏ ଅଛି !

କୁମାର - ଏତେସବୁ ଘଟଣା ଦେଖିସାରିଲା ପରେ ତମର ମତ କ'ଣ ?

ଅହଲ୍ୟା - ଏ ଜାଗାଟା ମତେ ବହୁତ ଭଲ ଲାଗୁଛି ।

କୁମାର - ମୁଁ କିନ୍ତୁ ଏଠି ରହିଲେ ଅଣନିଃଶ୍ୱାସୀ ହୋଇଯାଏ । କାଇଦା କଟକଣା ମଧ୍ୟରେ ରହି ରହି ଭୀଷଣ ବିରକ୍ତି ଆସିଯାଇଛି ସବୁ ଜିନିଷ ପ୍ରତି ।

ଅହଲ୍ୟା - ମୁଁ କିନ୍ତୁ କଥା ଦଉଛି । ମଣିମାଙ୍କୁ ନିଶ୍ଚୟ ପରିବର୍ତ୍ତନ କରେଇଦେବି । ତାଙ୍କର କିଛି ନା କିଛି ଦୁର୍ବଳ ଦିଗ ଥିବ । ଆଉ ସେହି ଦିଗଟାକୁ ଧରି ପାରିଲେ, ଲକ୍ଷ୍ୟସ୍ଥଳରେ ପହଞ୍ଚିବା ଭାରି ସହଜ ।

କୁମାର - ଆମେ ସମସ୍ତେ ହାରିଯାଇଛୁ ତାଙ୍କ ଜିଦ୍ ନିକଟରେ । ସେ ଯେତେବେଳେ ଯାହା ଚାହିଁବେ, ତାହା ବିନା ଦ୍ୱିଧାରେ କାର୍ଯ୍ୟକାରୀ ହେବ । କାରଣଟା ହଉଛି, ସିଏ ରାଜା ।

ଅହଲ୍ୟା - ଏଡ଼େ ସୁନ୍ଦର ଗାର୍ଡ଼େନ ଅଛି, ତାର ଯଦି ଯତ୍ନ ନିଆଯାଇପାରନ୍ତା-

କୁମାର - ଆସ ଯିବା । ଗାର୍ଡେନ୍ ଆଡ଼େ ବୁଲି ଆସିବା । ଗୋଟେ ନୂଆ ଜିନିଷ ଦେଖିବ । 'ସୂର୍ଯ୍ୟୋଦୟ'... ରୟାଲ ଗାର୍ଡେନର ସୂର୍ଯ୍ୟୋଦୟ ଦେଖିବା ସମସ୍ତଙ୍କ ଭାଗ୍ୟରେ ଜୁଟେନା... । ଆସ... ।

[ଆଗେ ଆଗେ କୁମାର... ତାଙ୍କ ପଛରେ ରହିଛନ୍ତି ଅହଲ୍ୟା ଯିବା ମୁଦ୍ରାରେ...]

# ଅଷ୍ଟମ ଦୃଶ୍ୟ

ସ୍ଥାନ - ଡ୍ରଇଂରୁମ୍
ସମୟ - ରାତି ଏଗାରଟା
ଚରିତ୍ର - ରଙ୍କ, ରାଜା

[ରୟାଲ ଡ୍ରଇଂରୁମ୍ । ସାଜସଜାରେ କୌଣସି ପରିବର୍ତ୍ତନ ନାହିଁ । ରାଜା ଭାନୁପ୍ରତାପଙ୍କ ସିଂହାସନ ଆରୋହଣର ୪୦ ବର୍ଷ ଆଜି ପୂରଣ ହେବାକୁ ଯାଉଛି । ତେଣୁ ରାଜାଙ୍କ ଅନ୍ତର ଭିତରେ ଆନନ୍ଦର ଜୁଆର । ରାଜା ଅପେକ୍ଷା କରିଛନ୍ତି ପାତ୍ର ମନ୍ତ୍ରୀ ସଭାସଦ୍‌ଗଣଙ୍କୁ । କାରଣ ସେମାନେ ତାଙ୍କୁ ଅଭିନନ୍ଦନ ଜଣାଇବାକୁ ଆସିବେ । କାନ୍ଥଘଣ୍ଟାର ଆୱାଜ୍ 'ରାତି ଏଗାରଟା' ସମୟ ଘୋଷଣା କରିଛି । କେହି ଆସୁ ନାହାନ୍ତି । ବେତ୍ରାହତ ପରି ପଦଚାଳନା କରୁଛନ୍ତି ରାଜା ଭାନୁପ୍ରତାପ । ବାହାରୁ ଆସିଛି ରଙ୍କ...]

ରଙ୍କ - ବଧାଇ ମଣିମା । ଆପଣଙ୍କ ଅଭିଷେକ ଉତ୍ସବର ଚାଳିଶ ବର୍ଷ ଆଜି ପୂରଣ ହେବାକୁ ଯାଉଛି । ମୁଁ ଛୋଟିଆ ମଣିଷଟିଏ । କ'ଣ ବା ଦେଇପାରିବି ! ଖାଲି ଦୂରରୁ ଥାଇ ପ୍ରଣାମଟିଏ ଜଣାଉଛି ।

[ସାଷ୍ଟାଙ୍ଗ ପ୍ରଣିପାତ କରିଛି ରଙ୍କ । ପ୍ରୀତ ହୋଇଛନ୍ତି ରାଜା ଭାନୁପ୍ରତାପ । ମୁହଁରେ ହସ]

ରାଜା - ଉଠ୍...ଉଠ୍... । ଆରେ ପାତ୍ରମନ୍ତ୍ରୀ, ସଭାସଦ୍ କର୍ତ୍ତବ୍ୟରେ କେହି ଅବହେଳା କରୁ ନାହାନ୍ତି ତ ? ଆନନ୍ଦ ବଜାରରେ କିଛି ଅସୁବିଧା ହୋଇନି ତ ? ହଁ, ମହାପାତ୍ରଙ୍କୁ କହିଦେ । କାହାରି ଚର୍ଚ୍ଚାରେ ଯେମିତି ଅବହେଳା ନ ହୁଏ !

ରଙ୍କ - 'ମଣିମା'....

ରାଜା - ହଁ, ଅତିଥିମାନଙ୍କୁ ଦଶ ନମ୍ବର ହଲ୍‌ରେ ବସା । ସେମାନଙ୍କର ଯଦି କିଛି ଅସୁବିଧା ହୁଏ, ମୁଁ କାହାରିକୁ ଛାଡ଼ିବିନି । ଜଣଜଣ କରି ସମସ୍ତଙ୍କ ଶିରଚ୍ଛେଦ କରିବି । ଆରେ ଯା' ଠିଆହେଲୁ କାହିଁକି ?

ରଙ୍କ - ମଣିମା, ରାତି ଏଗାରଟା ବାଜିଲାଣି । କିଏ ଆଉ ଆସିବ !

[ହଠାତ୍ ନିଜ ଭିତରକୁ ଫେରିଆସିଛନ୍ତି ରାଜା ଭାନୁପ୍ରତାପ । ବାସ୍ତବତାକୁ ସାମନା କରିଛନ୍ତି । ବାହାରି ଆସିଛି ଦୁଃଖର ଦୀର୍ଘଶ୍ୱାସ...]

ରାଜା - 'ହୁଁ'...

ରଙ୍କ - ଏତେ ରାତିରେ କିଏ ଆଉ ଆସିବ !

ରାଜା - ତୁ ଶୋଇବୁ ଯା'... । ବହୁତ ରାତି ହେଲାଣି ।

ରଙ୍କ - ମଣିମା, ଆପଣ ?

ରାଜା - ଆରେ ତୁ ଯା'... । ମୋ ଟାଇମ୍ ହେଇଗଲେ ମୁଁ ଶୋଇବି ।

[ରଙ୍କ ଚାଲିଯାଇଛି ଭିତରକୁ । ରାଜା ବିବ୍ରତ ।]

ରାଜା - କେହି ନ ଆସନ୍ତୁ । ମୋ ରାଜ ଅଭିଷେକର ବାର୍ଷିକ ଉତ୍ସବ ମୁଁ ନିଜେ ପାଳନ କରିବି । ଉତ୍ସବ କେବେ ବନ୍ଦ ହେବ ନାହିଁ । ମୁଁ ରାଜା... । ରାଜାର ଉତ୍ସବ କେବେ ବନ୍ଦ ହୋଇପାରେନା ।

[ଭିତରକୁ ଚାଲିଯାଇଛନ୍ତି । ଟାଣି ଟାଣି ଆଣିଛନ୍ତି ଗୋଟାଏ ସୁଟ୍‌କେଶ୍ । ତା' ଭିତରୁ ବାହାର କରିଛନ୍ତି ରାଜପୋଷାକ... ରାଜମୁକୁଟ... । ଗୋଟାକ ପରେ ଗୋଟାଏ ପିନ୍ଧିଛନ୍ତି... ମଞ୍ଚର ସାମନା ଭାଗକୁ ଆସିଛନ୍ତି । ଘୋଷଣା କରିଛନ୍ତି...]

ରାଜା - ମୁଁ ରାଜା... । ଦିବାଲୋକରେ ନ ହେଲା ନାହିଁ, ରାତିର ଘନ ଅନ୍ଧକାରରେ ରାଜା ଭାନୁପ୍ରତାପ ପାଳନ କରୁଛି ତା' ଅଭିଷେକର ବାର୍ଷିକ ଉତ୍ସବ... ।

[ବିବ୍ରତ ଅବସ୍ଥାରେ କିଛି ସମୟ ବୁଲିଛନ୍ତି । କିଛି ଗୋଟାଏ ଯେମିତି ସେ ଖୋଜୁଥିଲେ]

ରାଜା - ସିଂହାସନ ? ମୋ ସିଂହାସନ କାହିଁ ?

[ସିଂହାସନ ପାଖକୁ ଯାଇଛନ୍ତି । ଝାଡ଼ି ସଫା କରିଛନ୍ତି । ବସିଛନ୍ତି ସିଂହାସନ ଉପରେ । ଏକ ଅସମ୍ଭବ ରକମର ତୃପ୍ତି ସେ ଅନୁଭବ କରିଛନ୍ତି ।]

ରାଜା - କିଏ କହିଲା ମୋର ସିଂହାସନ ନାହିଁ ? କିଏ କହିଲା ମୋର ରାଜ୍ୟ ନାହିଁ..... ରାଜବାଟୀ ନାହିଁ ? ଆରେ ଦେଖିଯାଅ ପ୍ରଜାକୁଳ । ରାଜା ଏବେବି ବଞ୍ଚିଛି । ଭାନୁପ୍ରତାପ ଏବେବି ରାଜ୍ୟଶାସନ କରୁଛି... ।

[କିଛି ଗୋଟାଏ ଅସ୍ୱାଭାବିକ ଶବ୍ଦ ହୋଇଛି । ଚମକି ସିଂହାସନରୁ ଉଠି ପଡ଼ିଛନ୍ତି ରାଜା । ଚାରିଆଡ଼କୁ ସତର୍କ ଦୃଷ୍ଟି ବୁଲାଇଛନ୍ତି ।]

ରାଜା - ନା'... କେହି ନାହାନ୍ତି ! ଏତେ ରାତିରେ କିଏ ବା କାହିଁକି ଆସିବ ? ଏସବୁ ମନର ଭ୍ରମ । ସ୍ନାୟବିକ ଦୁର୍ବଳତା ।

[ରାଜା ଭାନୁପ୍ରତାପ ଆଗେଇ ଯାଇଛନ୍ତି ତରବାରି ପାଖକୁ । ତରବାରିକୁ ଧରିଛନ୍ତି । ଧାର ତାର ପରଖିଛନ୍ତି ।]

ରାଜା - ଏବେବି ମୋ ଦେହରେ ଅମାପ ଶକ୍ତି ରହିଛି । ମୁଁ ଗୋଟିଏ ପରେ ଗୋଟିଏ ରାଜ୍ୟ ଜୟ କରିବି । ଏ ମହୀମଣ୍ଡଳରେ ମୁଁ ହିଁ ଏକମାତ୍ର କର୍ଣ୍ଣଧାର... ।

[ଆନନ୍ଦରେ ଅଧୀର ହୋଇ ଭାନୁପ୍ରତାପ ହସୁଥିବାବେଳେ ଅନ୍ତରାଳରୁ ଭାସିଆସିଛି ରାଣୀ ସୁଭଦ୍ରାଙ୍କ କଣ୍ଠସ୍ୱର...]

ସୁଭଦ୍ରା - (voice) କ୍ଷମତାରେ ଅନ୍ଧ ହୋଇ ତମେ ଯେଉଁ ସିଂହାସନକୁ ଜାବୁଡ଼ି ଧରିଛ, ସେ ସିଂହାସନ ରହିବ ନାହିଁ କି ତମର ସେ କ୍ଷମତା ରହିବ ନାହିଁ । ସେଦ୍ଦିନ ବେଶି ଦୂର ନୁହେଁ । ନାରୀର ତତଲା ଲୁହରେ ତମ ସିଂହାସନ ଭୁଶୁଡ଼ି ପଡ଼ିବ । ରାଜ୍ୟ ଚାଲିଯିବ । ତମେ ହୋଇଯିବ ନିଃସ୍ୱ...ଦରିଦ୍ର... ।

ରାଜା - 'ନା'.... ! ମୋର ସବୁ ଅଛି । ସବୁ ରହିବ । ମୋର ସିଂହାସନ ଅଛି । ତାକୁ ମୋଠାରୁ କେହି ଛଡ଼େଇ ନେଇପାରିବେନି ।

[ସିଂହାସନକୁ ଜାବୁଡ଼ି ଧରିଛନ୍ତି । ଅନୁଭବ କରିଛନ୍ତି, ସିଂହାସନ ସ୍ଥିର ଅଛି ।]

ରାଜା - ସବୁ ଗୁଡ଼ାଏ ମନର ଭ୍ରମ... ଦୁର୍ବଳତା... । ଦେଖ ସୁଭଦ୍ରା, ଦେଖିଯାଅ ପ୍ରଜାକୁଳ । ମୋ ହାତରେ ଏବେବି ସିଂହାସନ ସୁରକ୍ଷିତ ଅଛି ।

ମୁଁ ଏବେ ମଧ୍ୟ ରାଜ୍ୟଶାସନ କରୁଛି । ଆରେ କିଏ ଅଛିରେ । ନୃତ୍ୟ ଆରମ୍ଭ କର ।

[ମିଉଜିକ୍‌ର ତାଳେ ତାଳେ ଭିତରୁ ନାଚି ନାଚି ଆସିଛି ରଙ୍କ । ସିଏ ଏବେ ବାଘ । ବାଘନାଚ ଚାଲିଛି । ଆଖିବୁଜି ନୃତ୍ୟକୁ ମନେ ମନେ ଉପଭୋଗ କରିଛନ୍ତି ଭାନୁପ୍ରତାପ...]

ରାଜା - ଜୋର୍‌ରେ... ଆହୁରି ଜୋର୍‌ରେ...

[ନାଚି ନାଚି ରଙ୍କ ରାଜାଙ୍କ ପାଦ ପାଖରେ ପଡ଼ିଯାଇଛି । ତଳୁ ତାକୁ ଟେକି ଧରିଛନ୍ତି ରାଜା]

ରାଜା - ରଙ୍କ, ତୁ !

ରଙ୍କ - ହଁ, ମଣିମା । ଆପଣଙ୍କ ଆଦେଶ ଆଉ କିଏ ଅଛି ଯେ ପାଳନ କରିଥାନ୍ତା !

ରାଜା - ତା'ମାନେ ତୁ ଶୋଇ ନ ଥିଲୁ ?

ରଙ୍କ - ରାଜ ଅଭିଷେକ ଉତ୍ସବରେ କେହି କ'ଣ ଶୋଇପାରେ ! ମୋ ଆଖିକୁ କେମିତି ବା ନିଦ ଆସିଥାନ୍ତା ! ମୁଁ ପରା ଆପଣଙ୍କ ନିଜ ଲୋକ । ଏତେବଡ଼ ବାର୍ଷିକ ଉତ୍ସବରେ ମୁଁ ନାଚିବିନି ତ ଆଉ କିଏ ନାଚିବ... ?

[ଦୀର୍ଘଶ୍ୱାସ ଛାଡ଼ିଛନ୍ତି ଭାନୁପ୍ରତାପ । ମୁଣ୍ଡରୁ ରାଜମୁକୁଟ କାଢ଼ିଛନ୍ତି ।]

# ନବମ ଦୃଶ୍ୟ

ସ୍ଥାନ - ରୟାଲ ଡ୍ରଇଂରୁମ୍
କାଳ - ଦିବସ
ଚରିତ୍ର - ମନୋଜ, ଦେୱାନ

[ରୟାଲ୍ ଡ୍ରଇଂରୁମ୍ । ପୂର୍ବର ସେହି ସାଜସଜା । ସବୁକିଛି ସେମିତି ରହିଛି । ରାଜା ଭାନୁପ୍ରତାପ ଅନୁପସ୍ଥିତ । ଦେୱାନ ତାଙ୍କୁ ଅପେକ୍ଷା କରିଥିଲେ । ଏହି ସମୟରେ ବାହାରୁ ଆସିଛନ୍ତି ମନୋଜ]

ମନୋଜ - ଆପଣ ?

ଦେୱାନ - ତମେ ?

ମନୋଜ - ମୁଁ ରାଜାସାହେବଙ୍କ ପାଖକୁ ଆସିଛି ।

ଦେୱାନ - କ'ଣ ଦରକାର ?

ମନୋଜ - ଦରକାରଟା ତାଙ୍କ ପାଖରେ । ଅବଶ୍ୟ ବ୍ୟକ୍ତିଗତ ।

ଦେୱାନ - ସେ ନାହାନ୍ତି । ଫେରୁ ଫେରୁ ସନ୍ଧ୍ୟା ହେବ ।

ମନୋଜ - କୁଆଡ଼େ ଯାଇଛନ୍ତି ?

ଦେୱାନ - ଜାଣିକରି ଲାଭ ?

ମନୋଜ - ଦରକାର ନ ଥିଲେ କହିଥାନ୍ତି କାହିଁକି ?

ଦେୱାନ - ଶିକାର କରିବାକୁ ଯାଇଛନ୍ତି ।

ମନୋଜ - ଶିକାର ! କିନ୍ତୁ ଶିକାରକୁ ତ ନିଷିଦ୍ଧ କରାଯାଇଛି !

ଦେୱାନ - ସେ ଆଦେଶକୁ କିଏ ମାନୁଛି ଯେ । ହଁ, ତମ ଦରକାରଟା କ'ଣ ଥିଲା ?

ମନୋଜ - ମୁଁ ମନୋଜ... । ଦିଲ୍ଲୀରୁ ଆସିଛି । ରାଜାଙ୍କ ଉପରେ ଗୋଟାଏ ଡକୁମେଣ୍ଟାରୀ ଫିଲ୍ମ କରୁଛି । କୁମାରବାବୁଙ୍କ ସାଙ୍ଗରେ ଦିଲ୍ଲୀରେ ଦେଖା ହୋଇଥିଲା । ସିଏ କିଛିଟା ସାହାଯ୍ୟ କରିଛନ୍ତି । ମୁଁ ଏଠିକି ଆଗରୁ ବି ଆସିଛି । ଉଙ୍କ ବି ମତେ ଜାଣିଛି ।

ଦେଓ୍ୱାନ - ସେ କଥା ଆଗରୁ କହୁନ ।

ମନୋଜ - ହେଲେ ମୁଁ ତ ଆପଣଙ୍କୁ ଆଗରୁ ଦେଖିନି । ଆପଣ କ'ଣ ରାଜାଙ୍କୁ ଦେଖା କରିବାକୁ ଆସିଛନ୍ତି ?

ଦେଓ୍ୱାନ - ମୁଁ ଦିନେ ଏଇଠି... ଏଇ ରାଜବାଟୀରେ ଦେଓ୍ୱାନ ଥିଲି । ରାଜତନ୍ତ୍ରର ଉଚ୍ଛେଦ ପରେ ପରେ ମୋ ଚାକିରି ମଧ୍ୟ ସରିଗଲା । ମଝିରେ ମଝିରେ ଖାଲି ମଣିମାଙ୍କ ଦର୍ଶନ ପାଇଁ ଯାହା ଆସେ... ।

ମନୋଜ - ତା'ହେଲେ ତ ଆପଣଙ୍କଠାରୁ ବହୁ ତଥ୍ୟ ଜଣାପଡ଼ିବ । କାରଣ ରାଜପରିବାରର ପ୍ରତ୍ୟେକ ସଦସ୍ୟଙ୍କୁ ଆପଣ ଭଲଭାବରେ ଜାଣିଥିବେ । ଯା'ହଉ ଆପଣ ତାଙ୍କ ସହିତ ସଂପର୍କ ରଖିଛନ୍ତି, ସେଇଟା ବଡ଼ କଥା ।

ଦେଓ୍ୱାନ - ପୁରୁଣା ଅଭ୍ୟାସଟା ଛାଡ଼ିହଉନି । ତିନି ତିନିଟା ପୁଅ ଚାକିରି କରୁଛନ୍ତି । ସେମାନଙ୍କ ପାଖେ ରହିପାରିଥାନ୍ତି । ହେଲେ ଭଲ ଲାଗିଲାନି ।

ମନୋଜ - ଏତେଦିନର ଚଳଣି...ସଂପର୍କ... ଏତେ ଶୀଘ୍ର ଭୁଲିହେବନି । ଏ ରାଜବାଟୀର ବହୁତ ଫଟୋ ମୁଁ ଉଠେଇଛି । ଦେଖିବେ ?

ଦେଓ୍ୱାନ - ନିଶ୍ଚୟ । [ଆଲବମ୍ ନେଇ ଦେଖିଛନ୍ତି]

ମନୋଜ - ସମସ୍ତଙ୍କ ଫଟୋ ରହିଛି । ହେଲେ ଜଣକୁ ପାଉନି ।

ଦେଓ୍ୱାନ - ପାଇବନି ମଧ୍ୟ । ମୁଁ ଜାଣେ, ତମେ ରାଣୀମା'ଙ୍କ କଥା କହୁଛ ।

ମନୋଜ - ହଁ ।

ଦେଓ୍ୱାନ - ରାଜାସାହେବ ତାଙ୍କ ଫଟୋଟିକୁ ଫିଙ୍ଗି ଦେଇଛନ୍ତି । ତାଙ୍କର ସବୁ ସ୍ମୃତି ମୂଳପୋଛ ହୋଇଯାଇଛି ।

ମନୋଜ - ଅନେକ ଖୋଜିଛି । ସବୁ ରୁମ୍‌ର ଫଟୋ ନେଇଛି । ହେଲେ କୋଉଠି ବି ତାଙ୍କୁ ପାଇଲିନି । ରାଜା ରାଣୀଙ୍କ ଭିତରେ କିଛି ମନୋମାଳିନ୍ୟ ? ଦେଖନ୍ତୁ, କିଛି ଲୁଚାଇବେନି ।

ଦେଓ୍ୱାନ - ଏ ରାଜବଂଶର ଲୁଣ ଖାଇଛି । କେମିତି ସେଗୁଡ଼ାକ କହିପାରିବି !

ମନୋଜ - ଏ ସବୁ ମୋ ଡକୁମେଣ୍ଟାରୀ ପାଇଁ ନିହାତି ଦରକାର ।

[ଫଟୋ ଦେଖିଲାବେଳେ ଗୋଟିଏ ଫଟୋ ଉପରେ ଦେଓ୍ୱାନଙ୍କ ଆଖି ଲାଖିଯାଇଛି]

ଦେଓ୍ୱାନ - ଏ ଫଟୋତ କୁମାରଙ୍କର । ହେଲେ ତାଙ୍କ ପାଖରେ ସେ ଝିଅଟି ?

ମନୋଜ - ଏତିକି ବୁଝିପାରୁ ନାହାନ୍ତି ! କହିଲେ ଯୋଡ଼ିଟା କେମିତି ମାନୁଛି ?

ଦେଓ୍ୱାନ - ହଁ, ଶୁଣ । ଏ ଫଟୋ ଯେମିତି ରାଜାଙ୍କ ଆଖିରେ ନ ପଡ଼େ !

ମନୋଜ - ତା' ନାଁ ଅହଲ୍ୟା । ଜଣେ ଭଲ ନର୍ତ୍ତକୀ.... ଡ୍ୟାନ୍ସର । ଦେଶବିଦେଶ ସବୁଠି ତା' ନାଚର ଆଦର ।

ଦେଓ୍ୱାନ - 'ନର୍ତ୍ତକୀ' ! ରାଜାସାହେବ କେବେ ବରଦାସ୍ତ କରିବେ ନାହିଁ । ସାମନାରେ ପଡ଼ିଲେ ଗୁଳି କରିଦେବେ ।

ମନୋଜ - ଏ ଫଟୋ ତ ମୁଁ ତାଙ୍କପାଇଁ ଆଣିଛି । କୁମାରବାବୁ କହିଛନ୍ତି ଦେବାପାଇଁ ।

ଦେଓ୍ୱାନ - ଯୁବକ, ସେଇଟି ମତେ ଦେଇଦିଅ । ମୁଁ ସମୟ ଆଉ ସୁଯୋଗ ଦେଖି ରାଜାଙ୍କୁ ବୁଝେଇ ଦେବି ।

[ମନୋଜ ଆଲବମ୍‌ରୁ ଫଟୋ କାଢ଼ି ଦେଇଛି ଦେଓ୍ୱାନଙ୍କୁ ।]

ମନୋଜ - ଭଲ ହେଲା । ଗୋଟାଏ କାମରୁ ମୁକ୍ତି ମିଳିଗଲା । ହେଲେ ରାଣୀମା'ଙ୍କ ଫଟୋଟା ?

ଦେଓ୍ୱାନ - ସେ କୋଉଠି ଅଛନ୍ତି, କେହି ଜାଣି ନାହାନ୍ତି ।

ମନୋଜ - ଠିକ୍ ଅଛି । ମୁଁ ଆଜି ଫେରିଯାଉଛି ।

[ନମସ୍କାର ପକାଇ ଚାଲିଯାଇଛି ମନୋଜ । ଫଟୋକୁ ଏବଂ ମନୋଜକୁ ଚାହୁଁଥିଲେ ଦେଓ୍ୱାନ...]

## ଦଶମ ଦୃଶ୍ୟ

ସ୍ଥାନ - ରୟାଲ ଡ୍ରଇଂରୁମ୍
ସମୟ - ରାତି
ଚରିତ୍ର - ସୁଭଦ୍ରା, ରଙ୍କ, ଦେଓ୍ୱାନ

[ରୟାଲ ଡ୍ରଇଂରୁମ୍ । ମଞ୍ଚରେ ଅଖଣ୍ଡ ନୀରବତା । ଗଭୀର ରାତି । ରଙ୍କ ଶୋଇଯାଇଛି । ଘୁଙ୍ଗୁଡ଼ିର ସ୍ୱର ଶୁଣାଯାଉଛି । ରଙ୍କ ସ୍ୱପ୍ନ ଦେଖିଛି । ରାଣୀମା ସୁଭଦ୍ରା ଆସିଛନ୍ତି । ରୟାଲ ଡ୍ରଇଂରୁମ୍‌ର ପ୍ରତ୍ୟେକଟି ପଦାର୍ଥ ଉପରେ ଥରେ ନିଜର ସତର୍କ ଦୃଷ୍ଟି ବୁଲାଇ ଆଣିଛନ୍ତି ସୁଭଦ୍ରା । ଦୁଃଖରେ ଭାଙ୍ଗି ପଡ଼ିଛନ୍ତି । ମନକୁ ମନ କହି ଚାଲିଛନ୍ତି...ମଞ୍ଚରେ ଝାପ୍‌ସା ଅନ୍ଧାର]

ସୁଭଦ୍ରା - ଭାବିଥିଲି, ସବୁ ଠିକ୍ ଚାଲିଥିବ । ହେଲେ ଏଠି ଆସି ପହଞ୍ଚିଲା ପରେ ଦେଖୁଛି, ବହୁତ କିଛି ପରିବର୍ତ୍ତନ ହୋଇଯାଇଛି । ମୋର ଅବର୍ତ୍ତମାନରେ ଏତେ ସବୁ ପରିବର୍ତ୍ତନ ଘଟିଗଲା... !

[ସୁଭଦ୍ରାଙ୍କ ଦୃଷ୍ଟି ନିବଦ୍ଧ ହୋଇଛି ବନ୍ଧୁକ ଉପରେ । ସ୍ନେହରେ ହାତ ବୁଲାଇ ଆଣିଛନ୍ତି ସୁଭଦ୍ରା । ଧୂଳି ଦେଖି ବିସ୍ମିତ ହୋଇଛନ୍ତି...]

ସୁଭଦ୍ରା - କେଇଟା ଦିନ ପାଇଁ ଚାଲିଗଲି । ତା' ଭିତରେ ସବୁ **ଏପଟ ସେପଟ** ହୋଇଗଲା ! ପ୍ରତ୍ୟେକ ଜିନିଷ ଉପରେ ରାଶି ରାଶି ଧୂଳି... ।

[ସିଂହାସନ ପାଖକୁ ଯାଇଛନ୍ତି ସୁଭଦ୍ରା । ସ୍ନେହରେ ସ୍ପର୍ଶ କରିଛନ୍ତି ସିଂହାସନକୁ । ନିଜ ଭିତରେ ଏକ ଅପୂର୍ବ ଗୁଞ୍ଜରଣ ଅନୁଭବ କରିଛନ୍ତି । ଶିହରଣ ଖେଳିଯାଇଛି ତାଙ୍କର ପ୍ରତିଟି ଅଙ୍ଗରେ...]

ସୁଭଦ୍ରା - ସିଂହାସନ... ! ଏହି ସିଂହାସନ ଦିନେ ତମର ଏତେ ଆପଣାର ଥିଲା । ସିଏ ଆଜି ଧୂଳିଧୂସରିତ । ଯାରିପାଇଁ ତମେ ଦିନେ ଧରାକୁ ସରା ମନେ କରୁଥିଲ । କ'ଣ ହେଲା ସେଇ ସିଂହାସନର ଅବସ୍ଥା ? ସିଂହାସନ

ତା' ଜାଗାରେ ସେମିତି ରହିଛି । ହେଲେ କେବଳ ହୂରେଇଗଲ ତମେ । ଦେଖିଲ, ସିଂହାସନ ତମକୁ କେମିତି ନର୍ଦ୍ଦମାକୁ ଫିଙ୍ଗିଦେଲା !

[ସିଂହାସନ ପାଖରୁ ଫେରିଛନ୍ତି ସୁଭଦ୍ରା । ଏଥର ତାଙ୍କ ଦୃଷ୍ଟିରେ ପଡ଼ିଛି ରାଜାଙ୍କ ତରବାରି । ଯାଇଛନ୍ତି ତରବାରି ପାଖକୁ । ସ୍ପର୍ଶ କରିଛନ୍ତି ।]

ସୁଭଦ୍ରା - ଯାରିପାଇଁ ତମେ ଦିନେ ମଣିଷ ମାନୁ ନ ଥିଲ ! ପାଖରେ ତରବାରି ଥିଲାଯାଏ ତମେ କାହାକୁ ଆଡ଼ ଆଖିରେ ଚାହୁଁ ନ ଥିଲ । ହେଲେ କୁଆଡ଼େ ଗଲା ତମର ସେ ତରବାରିର ଝଙ୍କାର ? ଶେଷକୁ ସେ ତରବାରିଟା ଗୋଟାଏ 'ସୋ-ପିସ୍'ରେ ପରିଣତ ହୋଇଗଲା !

[ରଙ୍କର ଘୁଙ୍ଗୁଡ଼ି ଶବ୍ଦ ବଢ଼ି ଚାଲିଥିଲା । ଧୀରେ ଧୀରେ ରଙ୍କ ପାଖକୁ ଆସିଥିଲେ । ସତୃଷ୍ଣ ନୟନରେ ଚାହିଁଥିଲେ ରାଜବାଟୀର ଏଇ ପୁରୁଣା ବୁଢ଼ା ଚାକରକୁ, ଯିଏ ଥିଲା ରାଜପରିବାରର ଏକାନ୍ତ ବିଶ୍ୱସ୍ତ ଆଉ ବଶମ୍ୱଦ...]

ସୁଭଦ୍ରା - ଆଉ ରଙ୍କ ତୁ ? ତୋତେ ବିଶ୍ୱାସ କରି, ମଣିମାଙ୍କ ଭାର ତୋ ଉପରେ ନ୍ୟସ୍ତ କରିଯାଇଥିଲି । ବେଶ୍ ଯତ୍ନ ନେଇଛୁ ମଣିମାଙ୍କର ! ତମେ ସମସ୍ତେ ମିଳିମିଶି ମତେ ଠକିଛ... ମୋ ବିଶ୍ୱାସର ସେତୁକୁ ଭାଙ୍ଗିଦେଇଛ ! ସତ କହୁଛି, ମୁଁ ଆଉ କେବେବି ଏ ସ୍ଥାନକୁ ଆସିବିନି... ।

[ଧୀରେ ଧୀରେ ସୁଭଦ୍ରା ଅପସରି ଯାଇଛନ୍ତି । ଚିତ୍କାର କରି ଉଠିଛି ରଙ୍କ । ମଞ୍ଚରେ ଆଲୋକ ସ୍ପଷ୍ଟ ହୋଇଛି ।]

ରଙ୍କ - ନା' ରାଣୀମା' ନା'... । ଆପଣ ସେମିତି କୁହନ୍ତୁନି । ଆପଣଙ୍କୁ ଜବାବ ଦଉଛି । ଏମିତି ଭୁଲ ଆଉ କେବେ କରିବି ନାହିଁ । ଆପଣ ଫେରିଆସନ୍ତୁ ରାଣୀମା' ।

[ଭିତରୁ ଆଖି ମଳିମଳି ଆସିଛନ୍ତି ଦେୱାନ]

ଦେୱାନ - କ'ଣ ହେଲା ରଙ୍କ ? ରାତିଟାରେ କାହିଁକି ଚିଲଉଛୁ ?

ରଙ୍କ - ରାଣୀମା' ଆସିଥିଲେ ଦେୱାନସାହେବ ।

ଦେୱାନ - ତୋ ମୁଣ୍ଡ ଠିକ୍ ଅଛି ତ ?

ରଙ୍କ - ସତ କହୁଛି ଦେୱାନସାହେବ । ମୋ ଉପରେ ରାଗିଲେ । ଅଭିମାନ କରି ଚାଲିଗଲେ ।

ଦେୱାନ - କବାଟ ଝରକା ତ ସବୁ ବନ୍ଦ । ରାଣୀମା' କ'ଣ ଉଡ଼ି ଉଡ଼ି ଆସିଲେ ?

ରଙ୍କ - ତା'ହେଲେ ? ମୁଁ ସ୍ୱପ୍ନ ଦେଖିଲି !

ଦେୱାନ - ଯା' ଶୋଇ ପଡ଼ିବୁ ଯା'... ଆହୁରି ରାତି ଅଛି ।

[ଦେୱାନ ଭିତରକୁ ଚାଲିଯାଇଛନ୍ତି ।]

ରଙ୍କ - ରାଣୀମା' ! ଏମାନେ ମତେ ଭୁଲ ବୁଝୁଛନ୍ତି । ଆପଣ ଥରେ ସେମାନଙ୍କୁ କହିଦିଅନ୍ତୁ, ଆସିଥିଲେ ବୋଲି...

[ଧୀରେ ଧୀରେ ଆଲୋକ ନିଷ୍ପ୍ରଭ ହୋଇ ଆସିଛି ।]

# ଏକାଦଶ ଦୃଶ୍ୟ

ସ୍ଥାନ - ଡାଇନିଂ ପ୍ଲେସ୍
କାଳ - ସକାଳ
ଚରିତ୍ର - ରାଜା, ବିକ୍ରମ, ରଙ୍କ

[ରୟାଲ ଡାଇନିଂ ପ୍ଲେସ୍ । ରାଜା ଭାନୁପ୍ରତାପ ଦଣ୍ଡବୈଠକ ମାରୁଥିଲେ । ଦେହରେ ଥିଲା ହାଲ୍‌କା ଡ୍ରେସ୍ ।]

ରାଜା - ଚଉରାନବେ... ପଞ୍ଚାନବେ... ଛୟାନବେ... ସତାନବେ... ଅଠାନବେ... ଅନେଶ୍ୱତ...

[ଶହେ ଉଚ୍ଚାରଣ କଲା ପୂର୍ବରୁ ମଞ୍ଚକୁ ଆସିଛନ୍ତି ଭାନୁପ୍ରତାପଙ୍କ ସାଙ୍ଗ ବିକ୍ରମ, ମିଲିଟାରୀ ଅଫିସର...]

ବିକ୍ରମ - 'ଶହେ'... ! ବାଃ... ବାଃରେ ୟଙ୍ଗମ୍ୟାନ୍... ! ଏ ବୟସରେ ବି ତୁ ଦଣ୍ଡବୈଠକ ମାରିପାରୁଛୁ । ତୋତେ ଧନ୍ୟବାଦ ଦେବା କଥା ।

ରାଜା - ଚଣ୍ଡୀଗଡ଼ରୁ କେବେ ଆସିଲୁ ?

ବିକ୍ରମ - ଆଜି ସକାଳେ ପହଞ୍ଚିଲି । ଭୋରୁ ଭୋରୁ ।

ରାଜା - କେତେ ଦିନ ରହଣି ?

ବିକ୍ରମ - ଦଶ ପନ୍ଦରଦିନ ଅଛି । ପହିଲାବେଳକୁ ଯାଇଁ ଯିବି । ଆଉ ତୋ ଖବର କ'ଣ କହ ।

ରାଜା - ମୋର ଗୋଟାଏ ଖବର କ'ଣ ! ହଁ, ଆମ କଥା ତୋର ମନେପଡ଼େ ନା' ନାହିଁ ?

ବିକ୍ରମ - ଆରେ କି କଥା କହୁଛୁ ! ତେବେ ପରିବାର ସହିତ ଥିଲାବେଳେ ମନେପଡ଼େନା.... କିମ୍ବା ଫିଲ୍‌ଡରେ ଥିଲାବେଳେ ମନେପଡ଼େନା... ହେଲେ ଯେତେବେଳେ ଏକାକୀ ହୋଇଯାଏ, ସେତେବେଳେ ତୋ କଥା ପ୍ରଥମେ ମନେପଡ଼େ । ଆଉ ତୋ କଥା କ'ଣ ? କେମିତି ଅଛୁ ?

ରାଜା - ଗାଡ଼ି ଏକରକମ ଚାଲିଛି । କିଛି ମନ୍ଦ ନୁହେଁ । ଦୂରରେ ଥିଲେ ବି ସବୁ କଥା ତ ଶୁଣିଥିବୁ !

ବିକ୍ରମ - ମାନେ ! କୋଉ କଥା ?

ରାଜା - ସେଇ ପ୍ରିଭି ପର୍ସ ବନ୍ଦ କଥା...

ବିକ୍ରମ - ହଁ... ! (ଦୀର୍ଘଶ୍ୱାସ ଛାଡ଼ିଛନ୍ତି)... । ସରକାରୀ ଆଇନ ସମସ୍ତଙ୍କ ପାଇଁ ସମାନ । ତୋପାଇଁ ତ ଏକା ହେଇନି !

ରାଜା - ରାଜାରାଜୁଡ଼ାଙ୍କୁ କାବୁ କରିବାପାଇଁ ଏଇଟା ଗୋଟାଏ ରୀତିମତ ଷଡ଼ଯନ୍ତ୍ର... । ପ୍ରିଭି ପର୍ସଟା ବନ୍ଦ କରିଦେଇ ଭାବିଥିଲେ ରାଜାମାନେ ସରକାରଙ୍କୁ ଖୋସାମତ କରିବେ ।

ବିକ୍ରମ - ସରକାର କେମିତି ବା ଜାଣିବେ, ରାଜାମାନଙ୍କର ଉଭା ଯେତିକି ପୋତା ବି ସେତିକି । ତୋ ନିଜ କଥା ଭାବୁନୁ !

ରାଜା - ହଁ, ଯେତିକି ଅଛି, ତିନି ପୁରୁଷ ପାଇଁ ଯଥେଷ୍ଟ । ରାଜବାଟୀର ଅଧାଅଧି ଗଲାଣି । ଯାଉ... କ୍ଷତି କ'ଣ... ? ତଥାପି ରାଜା ବଞ୍ଚିଛି ଆଉ ବଞ୍ଚିବ... ।

ବିକ୍ରମ - ହଁ, ସେଇଆ ନୁହେଁ ଆଉ କ'ଣ ! ହାତୀ ମଲେ ଲକ୍ଷେ, ଜିଇଁଲେ ବି ଲକ୍ଷେ ।

ଆରେ ହଁ... । ପଚାରିବାକୁ ମୁଁ ଭୁଲିଯାଇଛି ।

ରାଜା - କୋଉ କଥା ?

ବିକ୍ରମ - କୁମାର ଆଜିକାଲି କ'ଣ କରୁଛି ? ତା' ପାଠପଢ଼ା କେମିତି କ'ଣ ଚାଲିଛି ?

[ଦୁଃଖ ଅନୁଭବ କରିଛନ୍ତି ରାଜା ଭାନୁପ୍ରତାପ । କହିବେ କି ନାହିଁ କିଛି ଚିନ୍ତା କରି ପାରୁ ନ ଥିଲେ । ମୁଖମଣ୍ଡଳର ରେଖା କୁଟିଳ]

ବିକ୍ରମ - କ'ଣ ଭାବୁଛୁ ?

ରାଜା - ନା'... କିଛି ନାହିଁ । ସେ କୁଳାଙ୍ଗାରଟା କଥା କାହିଁକି ମନେ ପକେଇଲୁ ?

ବିକ୍ରମ - କ'ଣ ହୋଇଛି ?

ରାଜା - ସେ ଆଉ କୁମାର ହେଇ ରହି ନାହିଁ । ସ୍ୱାଧୀନ ଦେଶର ଗୋଟାଏ ସଚେତନ ନାଗରିକ ବନିଯାଇଛି । ତା'ର ଗୋଟାଏ ସ୍ୱତନ୍ତ୍ର ମନ ଅଛି ।

ବିକ୍ରମ - ଆରେ ଘଟଣାଟା କ'ଣ... ଟିକିଏ ଖୋଲିକରି କହ ।
ସିଏ କ'ଣ କିଛି ଭୁଲ୍ କରିଛି ?

ରାଜା - ନା'... ସିଏ କାହିଁକି ଭୁଲ୍ କରିବ ! ଭୁଲ୍ ତ ଏକା ଭାନୁପ୍ରତାପ କରୁଛି !

ବିକ୍ରମ - ମାନେ ?

ରାଜା - ଗୋଟାଏ ନାଚବାଲୀକୁ କହୁଛି ବାହା ହବ । ରାଜପୁତ୍ର ହୋଇ ବିବାହ କରିବ ଗୋଟାଏ ଇତର ସାଧାରଣ ନର୍ତ୍ତକୀକୁ ! ଅସମ୍ଭବ... ! ଅନ୍ତତଃ ଏ ବଂଶରେ ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ଏଇଟା ସମ୍ଭବ ନୁହେଁ ।

[ରଙ୍କ ଭିତରୁ ଭାନୁପ୍ରତାପଙ୍କ ପାଇଁ କାଚଗ୍ଲାସରେ ନାଲିଚା' ଧରି ଆସିଛି । ଦୃଷ୍ଟି ପଡ଼ିଛି ରାଜାଙ୍କ ବନ୍ଧୁ ବିକ୍ରମଙ୍କ ଉପରେ...]

ରଙ୍କ - ସାହେବ, ଆପଣ କେତେବେଳେ ଆସିଲେ ?

[ଜୁହାର କରିଛି ରଙ୍କ ବିକ୍ରମଙ୍କୁ । ରାଜାଙ୍କୁ ଚା' ଦେଇଛି ପିଇବାକୁ...]

ବିକ୍ରମ - ଏ ଦେଶରୁ ସାହେବମାନେ ଚାଲିଗଲା ପରେ ବି ତୁ ସେ ସାହେବମାନଙ୍କୁ ଭୁଲିପାରିନୁ । ଆଉ, କେମିତି ଅଛୁ ?

ରଙ୍କ - ମୋର ଗୋଟାଏ ଭଲମନ୍ଦ କ'ଣ ? ମଣିମା ଭଲ ତ ମୁଁ ଭଲ... ।

ରାଜା - ଜଣ ଜଣ କରି ସମସ୍ତେ ଛାଡ଼ି ଚାଲିଗଲେ । ଏକା ରହିଗଲା ରଙ୍କ । ତାକୁ ବି ଅନେକଥର କହିଛି । ତାର ଏକା ଜିଦ୍ । ସେ ମତେ ଛାଡ଼ି କୁଆଡ଼େ ଯିବ ନାହିଁ ।

ରଙ୍କ - (ବିକ୍ରମଙ୍କୁ) ସାହେବ, ଆପଣ କହୁ ନାହାନ୍ତି । ମୁଁ କେମିତି ଯାଇଥାନ୍ତି ! ମଣିମାଙ୍କୁ ଛାଡ଼ି ମୁଁ କେମିତି ଯେ ଯାଇପାରିବି ?

ରାଜା - ଶୁଣିଲୁ ତ ! ବେଶ୍ ଏଥର କହ । ୟା'କୁ କିଏ ବୁଝେଇଥାନ୍ତା !

[ଦୀର୍ଘଶ୍ୱାସ ଛାଡ଼ିଛନ୍ତି ବିକ୍ରମ ।]

ରାଜା - ଆରେ ରଙ୍କ, ବିକ୍ରମ ପାଇଁ ଚା' ଆଣ । ହଁ, ତୋର ଆମ ନାଲିଚା' ଚଳିବ ତ ? ସ୍ୱାସ୍ଥ୍ୟ ପକ୍ଷରେ ହିତକର ।

ବିକ୍ରମ - କ'ଣ ଅନ୍ଦର୍‌ସେ ଷ୍ଟ୍ରଙ୍ଗ !

[ଉଭୟ ଖୁବ୍ ଜୋରରେ ହସି ଉଠିଛନ୍ତି । ରଙ୍କ ଚା' ପାଇଁ ଚାଲିଯାଇଛି ଭିତରକୁ]

ବିକ୍ରମ - ଲାଲ୍ ଝଣ୍ଡା... ଲାଲ ସୂର୍ଯ୍ୟ... ଲାଲ ଚାବୁକ... ! ସେମିତି ତୋର ଏ ନାଲି ଚା' । ମାନେ ପ୍ରଗତିର ସଂକେତ... ।

ରାଜା - ସେଗୁଡ଼ାକ ମୁଁ କିଛି ବୁଝେନା ।

ବିକ୍ରମ - ତା'ହେଲେ ଏ ନାଲି ଚା' ?

ରାଜା - ଡାକ୍ତର ମନା କରିଛି । ସେଇଥିପାଇଁ ନାଲି ଚା'ଟା ଅଭ୍ୟାସ କରିବାକୁ ପଡ଼ିଲା । ଚଳିଗଲାଣି ।

ବିକ୍ରମ - ଚଳେଇନବା ଛଡ଼ା ଅନ୍ୟ ଗତି ନାହିଁ ।

[ରାଜା ଭାନୁପ୍ରତାପ ପ୍ରଶ୍ନବାଚୀ ଦୃଷ୍ଟିରେ ଚାହିଁଛନ୍ତି ବିକ୍ରମ ଆଡ଼େ...]

ବିକ୍ରମ - ବିଲୟର ଅୟମାରମ୍ଭ ! ଧୀରେ...ଧୀରେ...ଗୋଟିଏ ପରେ ଗୋଟିଏ ବିଦାୟ ନେବ ! ଏ ସବୁ ଦେଖି ତୁ ସହିପାରୁଛୁ ?

ରାଜା - ମୁଁ ରାଜା... ! ତା'ପରେ ମରୁଭୂମିରେ ଏକେଲା ଚାଲିବାରେ ମଧ ଗୋଟାଏ ପ୍ରକାର ସ୍ୱତନ୍ତ୍ର ଆନନ୍ଦ ଅଛି, ଯାହା ସମସ୍ତଙ୍କ ଭାଗ୍ୟରେ ଜୁଟେନା । ଏ ସବୁ ଦେଖି ତୁ ଡରିଯାଉଛୁ କି ?

ବିକ୍ରମ - ମୋର କାହିଁକି ଭାରି ଭୟ ହେଉଛି !

ରାଜା - ହେଲେ ରାଜା ନିର୍ଭୟ । ଏ ଭାନୁପ୍ରତାପ କାହାକୁ ଭୟ କରେନା । ତା' ଛାତିଟା ଲୁହାରେ ତିଆରି । ବେଶ୍ ଶକ୍ତ । ଭାଙ୍ଗିଯିବ ପଛେ ନଇଁବ ନାହିଁ ।

ବିକ୍ରମ - ସେଇଥିପାଇଁ ତ ସେ ରାଜା । ଗୋଟାଏ ଅଲଗା ଇଲାକାର ମଣିଷ । ରାଜା କେବଳ ଜଣେ । ଆଉ ସମସ୍ତେ ପ୍ରଜା... ସାଧାରଣ ମଣିଷ... ।

ରାଜା - ଆରେ ବିକ୍ରମ । ଆଜି ସୋମବାର । ମାଛ ମାଂସ ବନ୍ଦ । ଖାଲି ଭାତ ଡାଲ୍ମା । ଚଳିବ ତ ?

ବିକ୍ରମ - ଏ ସବୁ କେବେଠାରୁ ?

ରାଜା - ଅନେକ ଦିନ ହୋଇଗଲାଣି ।

ବିକ୍ରମ - ମତେ ଲାଗୁଛି ମୁଁ ଯେମିତି ଗୋଟାଏ ନୂଆ ଜାଗାକୁ ଆସିଛି । ଯେଉଁଆଡ଼କୁ ଚାହୁଁଛି, ସବୁଠି ନୂଆ... ଆଉ ନୂଆ... । ହଁ, କୁମାର କଥା ପଚାରୁଥିଲି ।

ରାଜା - ମୁଁ ନ ଥିଲାବେଳେ ଥରେ ସେ ଝିଅକୁ ଧରି ଆସିଥିଲା । ରଙ୍କ ବି ନ ଥିଲା । ସାଙ୍ଗେ ସାଙ୍ଗେ ଫେରିଗଲା ।

ବିକ୍ରମ - ଝିଅଟା ଦେଖିବାକୁ କେମିତିକା ?

ରାଜା - ଶୁଣିଛି, ବେଶ୍ ଡଉଲଡାଉଲ ! ଶ୍ୟାମ ସାହୁ ଭାଷାରେ, ସେ କୁଆଡ଼େ ଗୋଟାଏ ସ୍ୱର୍ଣ୍ଣପ୍ରତିମା ।

ବିକ୍ରମ - ତା'ହେଲେ ବାଧା ଦଉଛୁ କାହିଁକି ?

ରାଜା - ନା' କଦାପି ନୁହେଁ ! ଗୋଟାଏ ନାଚବାଲୀ ହବ ଏ ରାଜବଂଶର କୁଳବଧୂ ! ଅସମ୍ଭବ !

ବିକ୍ରମ - ଭାନୁ, ତୁ ଭୁଲ୍ କରୁଛୁ । ଯୁଗ ବଦଳିଗଲାଣି । ଅନ୍ୟର ଖିଆଲକୁ ସମ୍ମାନ ଦେଇ ଆମକୁ ଚଳିବାକୁ ପଡ଼ିବ । ଆରେ ଏଇଟା ହଉଛି ସାଲିସ୍‌ର ଯୁଗ ।

ରାଜା - ରାଜା ମରିଯିବ ପଛେ, ସାଲିସ୍ କରିପାରିବ ନାହିଁ ।

[ରଙ୍କ ନାଲି ଚା' ଧରି ଆସିଛି । ବିକ୍ରମକୁ ଦେଇଛି]

ରାଜା - ରଙ୍କ, ବିକ୍ରମ ଏଇଠି ଖାଇବ । ହଁ ବିକ୍ରମ, ତୁ ଚା' ପିଉଥା । ମୁଁ ଡ୍ରେସ୍‌ଟା ବଦଳେଇ ଆସେ । (ପ୍ରସ୍ଥାନ)

ବିକ୍ରମ - ଏତେସବୁ ଘଟଣା ଘଟିଗଲା, ଅଥଚ ମୁଁ କିଛି ଜାଣିନି । କେହିବି ଜଣାଇ ନାହାନ୍ତି ।

ରଙ୍କ - କିଏ ଆଉ ଅଛି ଯେ ଜଣାଇଥାନ୍ତା ! ତା'ପରେ ଘର କଥାଗୁଡ଼ାକ କେମିତି କାହାକୁ ବା କହିହବ !

ବିକ୍ରମ - ରାଜବାଟୀରୁ କେତେ ଗଲାଣି ?

ରଙ୍କ - ଅଧାରୁ ଅଧିକ ଗଲାଣି । ସମସ୍ତଙ୍କର ବାକି । କେମିତି କ'ଣ ଯେ ଚଳିବେ, ମତେ ଭାରି ଡର ଲାଗୁଛି । ମଣିମାଙ୍କର କୌଣସି କଥାକୁ ଖାତିର ନାହିଁ ।

ବିକ୍ରମ - ସିଏ ତ ରାଜା । ଡରିବ କାହିଁକି ?

ରଙ୍କ - ମାଛ ମାଂସ ମଦ... ଏ ସବୁ ସ୍ୱପ୍ନ ! ନାଲି ଚା'ରେ ଦିନ ଯାଉଛି । ଆଉ ସହି ହଉନି ସାହେବ ।

ବିକ୍ରମ - ରଙ୍କ, ରାଣୀମା'ଙ୍କ ଖବର କ'ଣ ?

ରଙ୍କ - କେହି କିଛି ଜାଣନ୍ତି ନାହିଁ । ଭାଇ ପାଖରେ ଅଛନ୍ତି ବୋଲି ଶୁଣିବାକୁ ମିଳୁଛି । ସଠିକ୍‌ଭାବେ କିଛି କହିହେବ ନାହିଁ । ନିଜ ନିଜର ଜିଦ୍ ପାଇଁ ଗୋଟାଏ ପରିବାର ଧୂଳିସାତ୍ ହୋଇଗଲା । ସାମାନ୍ୟ ଘଟଣାରୁ... । ଗୋଟି ଗୋଟି ହେଇ ସବୁ ମନେ ପଡ଼ିଯାଉଛି । ଏଇଠି... ଏଇ ଜାଗାରେ ସେଦିନ ଯାହାସବୁ ଘଟିଗଲା...

[Flash Back Sceneର ଆରମ୍ଭ । ସେଇ ଡାଇନିଂ ପ୍ଲେସ୍... । ଡାଇନିଂ ଟେବୁଲ୍‌ରେ ଚା' ପିଉଥିଲେ ସୁଭଦ୍ରା । ଗୋଟିଏ ଚେୟାର ଉପରେ ଭାନୁପ୍ରତାପଙ୍କ କୋର୍ଟ ପଡ଼ିଥିଲା । ଭିତରେ ଥିଲେ ରାଜା ।]

ରାଜା - (ଭିତରୁ ଥାଇ) ସୁଭଦ୍ରା, ମୋ କୋର୍ଟଟା ଆଣିଲ...

ସୁଭଦ୍ରା - ନଉଛି... ।

[ଚେୟାର ଉପରୁ କୋର୍ଟ ନେଲାବେଳେ କୋର୍ଟ ପକେଟରୁ ଗୋଟାଏ ଚିଠି ଗଳି ପଡ଼ିଛି । ଖୋଲି ପଢ଼ିଛନ୍ତି ସୁଭଦ୍ରା । ତାଙ୍କର ବିସ୍ମୟର ସୀମା ରହିଲା ନାହିଁ... । ଚିଠିର ଆରମ୍ଭ ଏବଂ ଶେଷ ସୁଭଦ୍ରାଙ୍କ କଣ୍ଠସ୍ୱର ରହିବ । ମଝିଅଂଶତକ ଗଙ୍ଗାର ସ୍ୱରରେ ପଢ଼ାଯିବ ।]

ସୁଭଦ୍ରା - ପ୍ରିୟତମ, ୟା' ଭିତରେ ପାଞ୍ଚବର୍ଷ ବିତିଗଲାଣି । ତମେ ଆସିଲ ନାହିଁ । ତମ ବାଟ ଚାହିଁ ଚାହିଁ ଆଖିରୁ ପାଣି ମଲାଣି । ହଁ, ତମ ପୁଅ 'ଭୀଷ୍ମ' ଭାରି ଦୁଷ୍ଟ ହେଇଛି । କାହାରି କଥା ଶୁଣୁନି । ଭାରି ଜିଦ୍‌ଖୋର ହେଇଛି । ସଦାବେଳେ ତମକୁ ଖୋଜୁଛି । କଲୋନୀର ଅନ୍ୟମାନେ ମଧ୍ୟ ତମ କଥା ପଚାରୁଛନ୍ତି । ଏ ସ୍ଥାନରେ ବେଶିଦିନ ରହିବା ଉଚିତ ମଣୁନି । ପୁଅର ଆଡ଼ମିସନ ହେବ । ତମେ ନିଶ୍ଚୟ ଆସିବ । ତମ ବାଟକୁ ଚାହିଁରହିଲି, ଇତି, ତମର 'ଗଙ୍ଗା'... ।

ରାଜା - (ଭିତରୁ ଥାଇ) କୋର୍ଟଟା ଆଣିବାକୁ ଏତେ ସମୟ ଲାଗୁଛି !

ସୁଭଦ୍ରା - ହୁଁ, ଗଙ୍ଗା... !

[ସୁଭଦ୍ରା ଚିଠିଟାକୁ ପୁନର୍ବାର ଭାଙ୍ଗି ରଖୁଥିଲେ । ମଞ୍ଚକୁ ଆସିଛନ୍ତି ଭାନୁପ୍ରତାପ...]

ରାଜା - ମୁଁ କେତେବେଳୁ କୋର୍ଟ ମାଗୁଛି...

ସୁଭଦ୍ରା - ଗଙ୍ଗା କିଏ ?

ରାଜା - (ଚିଠିଟା ଝାମ୍ପିନେଇ) ଅନ୍ୟର ଚିଠି ଲୁଚାଇ ପଢ଼ିବା କେବେଠାରୁ ଶିଖିଲଣି ?

ସୁଭଦ୍ରା - ମୋ ପ୍ରଶ୍ନର ଉତ୍ତର ଦିଅ । ଗଙ୍ଗା କିଏ ?

ରାଜା - ତମର ସବୁ ପ୍ରଶ୍ନର ଉତ୍ତର ଦେବାକୁ ମୁଁ ବାଧ ନୁହେଁ ।

ସୁଭଦ୍ରା - ଆଜି କିନ୍ତୁ ତମେ ମୋ ପ୍ରଶ୍ନର ଉତ୍ତର ଦବାକୁ ବାଧ ।

ରାଜା - ଯଦି ନ ଦିଏ ?

ସୁଭଦ୍ରା - ପରିଣତି ଭୟାବହ ହେବ ।

ରାଜା - କ'ଣଟା ଜାଣିବାକୁ ଚାହୁଁଛ ? ପଚାର ।

ସୁଭଦ୍ରା - ଗଙ୍ଗା କିଏ ?

ରାଜା - ଏହି ସାଧାରଣ କଥା ଜାଣିନ ? 'ଭାରତର ବଡ଼ ନଦୀ' ।

ସୁଭଦ୍ରା - ମୋ ଆଖିରେ ଧୂଳି ଦେବାକୁ ଚେଷ୍ଟା କରନା ଭାନୁପ୍ରତାପ । ଭୀଷ୍ମ କିଏ ?

ରାଜା - ତାର ଉତ୍ତର ତମେ ଜାଣ । ମହାଭାରତର ଶ୍ରେଷ୍ଠ ଯୋଦ୍ଧା । ଗଙ୍ଗାଙ୍କର ପୁତ୍ର... କୁରୁପାଣ୍ଡବଙ୍କ ପିତାମହ ।

ସୁଭଦ୍ରା - ତମେ ଭାବନି ଯେ ତମେ ଏକା ପଶା ଖେଳି ଜାଣିଛ । ମୁଁ ବି ରାଜନନ୍ଦିନୀ । ମତେ ବି ଗୋଟି ଚଳେଇ ଆସେ ।

ରାଜା - କ'ଣଟା କରିପାରିବ ? ହଁ, କ'ଣଟା ଜାଣିବାକୁ ଚାହୁଁଛ ? ଶୀଘ୍ର କୁହ ।

ସୁଭଦ୍ରା - ତମେ ଭଲଭାବେ ଜାଣ, ମୁଁ କ'ଣ ଚାହେଁ ।

ରାଜା - ହଁ...ହଁ... ଗଙ୍ଗା ମୋରି ସ୍ତ୍ରୀ, ଆଉ ଭୀଷ୍ମ ମୋରି ସନ୍ତାନ ।

ସୁଭଦ୍ରା - ସ୍ତ୍ରୀ ନୁହେଁ, କୁହ 'ରକ୍ଷିତା' ।

ରାଜା - ସୁଭଦ୍ରା ! ତମେ ସୀମା ଲଂଘନ କରୁଛ ।

ସୁଭଦ୍ରା - ଖୁବ୍ ବାଧୁଛି, ନୁହେଁ ?

ରାଜା - 'ସୁଭଦ୍ରା' !

ସୁଭଦ୍ରା - ବଡ଼ପାଟି ମତେ ବି କରିଆସେ । ହୁଁ, 'ଗଙ୍ଗା' ମୋର ସ୍ତ୍ରୀ ! ଆଉ 'ଭୀଷ୍ମ' ମୋର ସନ୍ତାନ... !

ରାଜା - ନିଜକୁ ସଂଯତ କର ସୁଭଦ୍ରା ।

ସୁଭଦ୍ରା - କ'ଣ ତମେ ଭାବିଛ ? ତମର ମନ ଥାଇପାରେ, ହେଲେ ସେଥିପାଇଁ ଲଗାମ୍ ଦରକାର ।

ରାଜା - ସୁଭଦ୍ରା ! (କ୍ରୋଧରେ) ।

ସୁଭଦ୍ରା - ଛି...ଛି...ତମେ ଏତେ ତଳକୁ ଖସି ଯାଇପାରିଲ ! ଶେଷରେ ଗୋଟାଏ ଇତର ନାରୀ ସାଥିରେ... ! ଘୃଣା ଆସୁଛି ରାଜା, ତମ ପ୍ରତି । ତମେ ଆଉ ରାଜା ହୋଇ ରହି ନାହଁ, ସେ ପଦମର୍ଯ୍ୟାଦାରେ କଳଙ୍କ ବୋଳି ଦେଇଛ !

ରାଜା - ସୁଭଦ୍ରା, ଜିଭରେ ଲଗାମ ଦିଅ, ନଚେତ୍-

ସୁଭଦ୍ରା - ଚିତ୍କାର କରନି । 'ସୁଭଦ୍ରା' ଉଚ୍ଚାରଣ କରିବାର ଅଧିକାର ତମେ ହରେଇ ବସିଛ ରାଜା । ନିଜର ସ୍ତ୍ରୀ...ପୁତ୍ର... ଥାଉଁ ଥାଉଁ, ଯିଏ ଗୋଟାଏ ବାରନାରୀ ସହିତ ସଂପର୍କ ରଖେ-

ରାଜା - ସୁଭଦ୍ରା, ଗଙ୍ଗାକୁ ତମେ ସେପରି କହିପାରିବ ନାହିଁ ।

ସୁଭଦ୍ରା - ଥରେ ନୁହେଁ, ଶହେ ଥର କହିବି । ସେ ବାରନାରୀ... ।

ରାଜା - 'ସୁଭଦ୍ରା'... !

[ମାରିବାକୁ ହାତ ଉଠାଇଛନ୍ତି ସୁଭଦ୍ରାଙ୍କ ଉପରକୁ ଭାନୁପ୍ରତାପ । ମାତ୍ର ଅଟକାଇଛନ୍ତି ସୁଭଦ୍ରା]

ସୁଭଦ୍ରା - ସୁଭଦ୍ରା ପୋଷା ଶାରୀ ନୁହେଁ, ଚୁପ୍‌ଚାପ ତମ କଥା ମାନିନେବ ! କ'ଣ ଭାବିଛ ନିଜକୁ ?

ରାଜା - ମୁଁ ରାଜା... । ମୋର ଇଚ୍ଛା, ଏ ରାଜ୍ୟର ଇଚ୍ଛା । ଆଉ ସେ ଇଚ୍ଛା ବିରୋଧରେ ଯିଏ ସ୍ୱର ଉତ୍ତୋଳନ କରିବ ତାର ଏ ରାଜବଂଶରେ ସ୍ଥାନ ନାହିଁ ।

ସୁଭଦ୍ରା - ଗୋଟାଏ କଳଙ୍କିତ ରାଜବଂଶଠାରୁ ବରଂ ନର୍କ ଯନ୍ତ୍ରଣା ଭଲ ।

ରାଜା - ସୁଭଦ୍ରା, ତମେ ଖାଲି ଭାନୁକୁ ଦେଖିଛ ! ତାର ପ୍ରତାପ ଦେଖିନା...

ସୁଭଦ୍ରା - ସେ କଳଙ୍କିତ ପ୍ରତାପକୁ ମୁଁ ଦେଖିବାକୁ ଚାହେଁନା । ଏଠି ଆଉ ଗୋଟାଏ ମୁହୂର୍ତ୍ତ ରହିଲେ ମୁଁ ରୁଦ୍ଧଶ୍ୱାସ ହୋଇଯିବି ।

[ରାଗରେ ତମତମ ହୋଇ ଭିତରକୁ ପଶିଯାଇଛନ୍ତି ସୁଭଦ୍ରା । ଝପଟି ଆସିଛି ଭିତରକୁ ରଙ୍କ । ନେହୁରା ହୋଇଛି]

ରଙ୍କ - ମଣିମା । ରାଣୀମା'ଙ୍କୁ ଅଟକାନ୍ତୁ । ସେ ଚାଲିଯାଉଛନ୍ତି ।

ରାଜା - ଯିଏ ଯିବାକୁ ଚାହୁଁଛି, ସେ ଯାଉ ।

ରଙ୍କ - ମଣିମା, ଥରେ ସଂସାର ଭାଙ୍ଗିଗଲେ ଆଉ ସହଜରେ ଯୋଡ଼ିହବନି । ମୋ ସାନକୁହା ମାନନ୍ତୁ । ରାଣୀମା'ଙ୍କୁ ଯିବାକୁ ଦିଅନ୍ତୁନି... ।

ରାଜା - ଯିଏ ମୋ ରାଜବଂଶକୁ ଆକ୍ଷେପ କରେ, ତାର ଏ ଘରେ ସ୍ଥାନ ନାହିଁ ।

ରଙ୍କ - ମଣିମା, ଆପଣଙ୍କୁ ନେହୁରା ହଉଛି । ରାଣୀମା' ଥରେ ଚାଲିଗଲେ ଆଉ ସହଜରେ ଫେରିବେନି ।

ରାଜା - ତୋର ଏ ସବୁରେ ମଥା ଖେଳେଇବା ଦରକାର ନାହିଁ । ତୁ ଯେତିକିରେ ମଣିଷ, ସେତିକିରେ ରହ ।

ରଙ୍କ - ମାରିବେ ଯଦି ମାରନ୍ତୁ । ଏ ବୁଢ଼ା ଚାକରଟା ପଦେ ବି ପାଟି ଫିଟେଇବ ନାହିଁ । ...ଲେ ମୋରି ଆଖି ଆଗରେ ମୁଁ କେମିତି ଗୋଟାଏ ଘରକୁ ଭାଙ୍ଗିବାର ଦେଖିବି... ! ପାରିବେ ଯଦି ମୋ ଆଖି ଦୁଇଟା ଫୁଟେଇ ଦିଅନ୍ତୁ ।

ରାଜା - 'ରଙ୍କ'....

[ରାଗି ଯାଇଛନ୍ତି ରାଜା ଭାନୁପ୍ରତାପ । ରଙ୍କ ଭିତରକୁ ଚାଲିଯାଇଛି । ଗୋଟାଏ ଆଟାଚି ହାତରେ ଧରି ଆସିଛନ୍ତି ସୁଭଦ୍ରା । ଚାହିଁଛନ୍ତି ଅବଜ୍ଞାସୂଚକ ଭଙ୍ଗୀରେ ରାଜା ଭାନୁପ୍ରତାପଙ୍କୁ । ପରେ ପରେ ବାହାରକୁ ବାହାରି ଯାଇଛନ୍ତି ସୁଭଦ୍ରା । ଭିତରୁ ରଙ୍କର କାନ୍ଦଣା ଶୁଭୁଥିଲା ...]

[Flash Back ଏଇଠି ଶେଷ ହୋଇଛି । ରଙ୍କ କହି ଚାଲିଛି ବିକ୍ରମଙ୍କୁ ରାଜବଂଶର ଏକ ଅଲିଖିତ ଅଧ୍ୟାୟ... ଦୀର୍ଘଶ୍ୱାସ ଛାଡ଼ିଛନ୍ତି ବିକ୍ରମ...]

ବିକ୍ରମ - ମୁଁ ଭାନୁକୁ ପିଲାଟିବେଳୁ ଜାଣିଛି । ଆମେ ଦୁହେଁ ସାଙ୍ଗ ହେଇ ପଢ଼ିଛୁ, ଖେଳିଛୁ । ସେ ଯାହା ବୁଝିଥିବ, ସେଇଆ ।

ରଙ୍କ - କେତେ ନେହୁରା ହେଇ କହିଛି । ମଣିମା କ'ଣ ମୋ କଥା ଶୁଣିଲେ ? ରାଣୀମା' ଚାଲିଗଲା ଦିନଠାରୁ ଏ ରାଜବଂଶର ଶିରୀ ତୁଟିଯାଇଛି ।

ବିକ୍ରମ - ହଁ । ତାର ଛାପ ସବୁଠି ଦେଖିବାକୁ ମିଳୁଛି ।

ରଙ୍କ - ସାହେବ, ମୋରି ଆଖି ଆଗରେ ଏ ବଂଶଟା ଛାରଖାର ହୋଇଗଲା । ମୁଁ କିଛି କରିପାରିଲିନି... ।

ବିକ୍ରମ - ବର୍ତ୍ତମାନ ଆଉ କ'ଣ କରିହେବ ?

ରଙ୍କ - ଆପଣ ଥରେ ଚେଷ୍ଟା କରନ୍ତୁ । ରାଣୀମା'ଙ୍କୁ ଫେରେଇଆଣନ୍ତୁ । ମୁଁ ଜାଣେ, ଆପଣଙ୍କୁ ମଣିମା କିଛି କହିବେନି ।

ବିକ୍ରମ - ଆରେ ଭାନୁଟାକୁ ତ ଜାଣିଛୁ । ସେଇଟା ମଣିଷ ନୁହେଁ । ଗୋଟାଏ ରାଜା । ଭିନ୍ନ ଉପାଦାନରେ ତା' ଶରୀର ଗଢ଼ା । ତଥାପି ମୁଁ ଚେଷ୍ଟା କରିବି ।

ରଙ୍କ - ସେତିକି କରନ୍ତୁ ସାହେବ । ଏ ବୁଢ଼ାଟାର ଆଶା ପୂରଣ ହଉ । ରାଜା-ରାଣୀଙ୍କୁ ଗୋଟାଏ ଜାଗାରେ ଦେଖିଲେ, ମୁଁ ଶାନ୍ତିରେ ଆଖି ବୁଜିପାରିବି... ।

[କାନ୍ଦିଉଠିଛି ରଙ୍କ । ଧୀରେ ଧୀରେ ଆଲୋକ ନିଷ୍ପ୍ରଭ ହୋଇଛି...]

## ଦ୍ୱାଦଶ ଦୃଶ୍ୟ

ସ୍ଥାନ - ରୟାଲ ଡ୍ରଇଂରୁମ୍
କାଳ - ପୂର୍ବାହ୍ନ
ଚରିତ୍ର - ରାଜା, ଅହଲ୍ୟା

[ରୟାଲ ଡ୍ରଇଂରୁମ୍ । ରାଜା ଭାନୁପ୍ରତାପ ବସି ଖବରକାଗଜ ପଢୁଥିଲେ । ଭିତରୁ ଅହଲ୍ୟା ଦୁଇକପ୍ ଚା' ନେଇ ଆସିଛି ।]

ଅହଲ୍ୟା - ନିଅନ୍ତୁ ।

ରାଜା - ଆରେ ତମେ ଏ ସବୁ କାହିଁକି କରୁଥିଲ ? ରଙ୍କ ଥିଲା, ତାକୁ କହିଥିଲେ ଚା' କରି ଦେଇଥାନ୍ତା ।

ଅହଲ୍ୟା - ମୁଁ ଥାଉଁ ଥାଉଁ ରଙ୍କ ଚା' କରିବ !

ରାଜା - ଯାହାହେଲେ ବି ତମେ ଆମର ଅତିଥି ।

ଅହଲ୍ୟା - ପ୍ରଥମରୁ କହିଛି ମଣିମା, ମୁଁ ଅତିଥି ନୁହେଁ । ଏ ଘରର ଜଣେ ।

ରାଜା - ଅହଲ୍ୟା, କାହିଁକି ଆଉ ଅଧିକ ମାୟା ମମତା ଲଗାଉଛ ? ଏ କେତେଦିନ ଭିତରେ ତମେ ସମସ୍ତଙ୍କୁ ଆପଣାର କରିପାରିଛ । ଶେଷରେ ଏ ରକ୍ଷ ମଣିଷଟାକୁ ବି... ।

ଅହଲ୍ୟା - କିଏ କହିଲା, ମଣିମା ରକ୍ଷ ! ଆପଣଙ୍କ ଭିତରେ ଲୁଚି ରହିଥିବା ମଣିଷଟାକୁ ମୁଁ ସ୍ପଷ୍ଟ ଦେଖିପାରୁଛି ।

ରାଜା - ଅହଲ୍ୟା, ତମ ରିସର୍ଚ୍ଚ ଆଉ କେତେ ଦିନ ଲାଗିବ ?

ଅହଲ୍ୟା - ଆପଣଙ୍କର ଯଦି କିଛି ଅସୁବିଧା ହେଉଥାଏ, ମୁଁ ଶୀଘ୍ର ଚାଲିଯିବି । ଚାରି ପାଞ୍ଚ ଦିନ ଭିତରେ ମୋ କାମ ସାରିଦେବି ।

ରାଜା - ଆରେ ତମକୁ ମୁଁ ଯିବାକୁ କହୁନି । ଏକେଲା ରହି ରହି ଏକରକମ ଅଭ୍ୟାସ ହୋଇଯାଇଥିଲା । ତମେ ଆସିଲାପରଠୁଁ ଏ ରାଜବାଟୀରେ କିଛିଟା ଜୀବନ ଆସିଛି ।

ଅହଲ୍ୟା - ମଣିମା, ଚା'ଟା ଥଣ୍ଡା ହୋଇଯିବ

[ଉଭୟ ଚା' ପିଉଛନ୍ତି । ରାଜା ଚାହିଁରହିଛନ୍ତି ଅହଲ୍ୟା ଆଡ଼େ । ମୁଖମଣ୍ଡଳରେ ଭାବନାର ସ୍ୱଷ୍ଟ ଇଙ୍ଗିତ ଉଙ୍କି ମାରିଛି]

ଅହଲ୍ୟା - କ'ଣ ଦେଖୁଛନ୍ତି ?

ରାଜା - କିଛି ନାହିଁ ।

ଅହଲ୍ୟା - ମିଛ କହିଲେ । ଆପଣ ମୋ ଭିତରେ ଥାଇ ଗୋଟାଏ ନାରୀକୁ ଖୋଜୁଛନ୍ତି ।

ରାଜା - 'ଅହଲ୍ୟା'....

ଅହଲ୍ୟା - ହଁ, ମଣିମା । ଆପଣ ରାଣୀମା'ଙ୍କୁ ମୋ ଭିତରେ ଖୋଜୁଛନ୍ତି । ତାଙ୍କୁ ଆପଣ କେତେ ଭଲପାଆନ୍ତି, ତାର ପ୍ରମାଣ ଏ କେତେଦିନ ଭିତରେ ମୁଁ ପାଇସାରିଛି । ମୁଁ ସାଇକୋଲଜିର ଷ୍ଟୁଡେଣ୍ଟ । ମତେ ଏ ସବୁ ଅଛପା ରହିବ ?

ରାଜା - ଯାହା ଯାଇଛି, ତାହା ଆଉ ଫେରିବନି । ସେ ବିଷୟରେ ମୁଁ କେବେ ଭାବିବାକୁ ପସନ୍ଦ କରେନା ।

ଅହଲ୍ୟା - ନା' ମଣିମା । ଆପଣଙ୍କ ଘୃଣା ପଛପଟେ ଗୋଟାଏ ଅସାମାନ୍ୟ ହୃଦୟର ପ୍ରେମ ଲୁଚି ରହିଛି । ମୁଁ ତାର ସନ୍ଧାନ ପାଇସାରିଛି ।

ରାଜା - ଅହଲ୍ୟା, କ'ଣ କରିବ ଭବିଷ୍ୟତରେ ? ମାନେ ତମ ରିସର୍ଚ୍ଚ ପରେ ? ଚାକିରି ?

ଅହଲ୍ୟା - ଆଗ ରିସର୍ଚ୍ଚ ସରୁ । ଭବିଷ୍ୟତ କଥା ଚିନ୍ତା କରିବାକୁ ସମୟ ମିଳିବ ।

ରାଜା - ଅହଲ୍ୟା, ଯେଉଁଠି ଚାକିରି କଲେ ବି ଏ ବୁଢ଼ା ମଣିଷଟା ପାଖକୁ ମଝିରେ ମଝିରେ ଚିଠି ଦବ ।

ଅହଲ୍ୟା - ହଁ ମଣିମା । ସେ ଭୁଲ୍ ମୁଁ କେବେ କରିବିନି ।

ରାଜା - ଅହଲ୍ୟା, ତୁମେ-

ଅହଲ୍ୟା - କୁହନ୍ତୁ, ଅଟକିଗଲେ କାହିଁକି ? ମୁଁ ଆପଣଙ୍କ ଝିଅଭଳି ।

ରାଜା - ତମେ ମତେ ଆଉ 'ମଣିମା' ବୋଲି ଡାକନି । ସେଇଟା ବାହାର ଲୋକଙ୍କ ପାଇଁ । ତମେତ ଏ ରାଜପରିବାରର ଜଣେ ହୋଇଯାଇଛ । ବରଂ 'ଅଙ୍କଲ' ଡାକିଲେ ମୁଁ ଖୁସି ହେବି ।

ଅହଲ୍ୟା - ଏତେବଡ଼ ସୌଭାଗ୍ୟ ମୋର ! ମୁଁ ଯେ କେମିତି କିପରି ଆପଣଙ୍କୁ ଧନ୍ୟବାଦ ଦେବି, ଭାବିପାରୁନି ।

ରାଜା - କୁମାରଟାର ଯଦି ଆଖି ଥା'ନ୍ତା, ସିଏ କେବେ ଭୁଲ୍ କରିଥାନ୍ତା ? ତା ସିଲେକ୍‌ସନ୍‌ଟା ପୂରାପୂରି ଭୁଲ୍ । ବାଜେ ସିଲେକ୍‌ସନ୍...

ଅହଲ୍ୟା - କାହା କଥା କହୁଛନ୍ତି ମଣିମା ?

ରାଜା - ପୁଣି 'ମଣିମା' ?

ଅହଲ୍ୟା - ସରି, ଅଙ୍କଲ । ଆଉ କେବେ ଭୁଲ ହବନି ।

ରାଜା - ଏଇଟା ହଉଛି ଭଲ ଝିଅର ଲକ୍ଷଣ । ମା' ରଙ୍କୁ କହିଦେ । ଆଜି ଭାକୁର ମାଛଟା ରାନ୍ଧୁ ।

ଅହଲ୍ୟା - ମୁଁ ତାଙ୍କୁ କହିସାରିଛି । ସବୁ ଜିନିଷପତ୍ର ବି ଯୋଗାଡ଼ କରିଦେଇଛି...

[ରାଜା ଏକଲୟରେ ଚାହିଁରହିଥିଲେ ଅହଲ୍ୟାକୁ । ମନରେ ଭାବନାର ତରଙ୍ଗ ଆଉ ତରଙ୍ଗ...]

## ତ୍ରୟୋଦଶ ଦୃଶ୍ୟ

ସ୍ଥାନ - ଡ୍ରଇଂରୁମ୍
ସମୟ - ଅପରାହ୍ନ
ଚରିତ୍ର - ବୁଲୁ, ରାଜା, ରଙ୍କ

[ରୟାଲ ଡ୍ରଇଂରୁମ୍ । ସବୁ ସେମିତି ଅପରିବର୍ତ୍ତିତ ରହିଛି । ରାଜା ଭାନୁପ୍ରତାପ ଆଲବମ୍‌ରୁ ଫଟୋ ଦେଖୁଥିଲେ । ଅତୀତ ତାଙ୍କ ଆଗରେ ମୂର୍ତ୍ତିମନ୍ତ ହୋଇ ଠିଆ ହେଉଥିଲା । ଭିତରକୁ ଆସିଛି ବୁଲୁ, ଦେଓ୍ୱାନଙ୍କ ପୁଅ/ କଲେକ୍ଟର । ଭାନୁପ୍ରତାପ ଏଭଳି ତନ୍ମୟ ହୋଇ ଫଟୋ ଦେଖୁଥିଲେ ଯେ ସେ ବୁଲୁର ଉପସ୍ଥିତି ଜାଣିପାରି ନ ଥିଲେ । ରାଜାଙ୍କ ପାଦ ଛୁଇଁ ପ୍ରଣାମ କରିଛି ବୁଲୁ । ମଥା ଟେକି ବୁଲୁକୁ ଚାହିଁଛନ୍ତି ରାଜା ଭାନୁପ୍ରତାପ...]

ବୁଲୁ - ଚିହ୍ନିପାରୁଛନ୍ତି ?

ରାଜା - (ନୀରବରେ ଚାହିଁଛନ୍ତି)

ବୁଲୁ - ମୁଁ କିଏ କୁହନ୍ତୁ ।

ରାଜା - (ରାଜା ଭାବିଛନ୍ତି)

ବୁଲୁ - ମନେପଡୁନି ? ମୁଁ ଜାଣେ ଆପଣ ଭୁଲି ଯାଇଥିବେ ! 'ବାଡ଼ି'...

ରାଜା - ଆରେ ତୁ ଆମ ଦେଓ୍ୱାନ ପୁଅ 'ବୁଲୁ' ।

ବୁଲୁ - ଏଥର ଠିକ୍ ଚିହ୍ନି ପାରିଛନ୍ତି ।

ରାଜା - ଏ କଲେକ୍ଟର, ତୋ ରାଜ୍ୟର ଖବର କ'ଣ ? ଆରେ ଏତେଦିନକେ ଏ ରାଜାଟା କଥା ତୋର ମନେପଡ଼ିଲା ?

ବୁଲୁ - ଅଧାଅଧି ସମୟ ପାଠପଢ଼ାରେ କଟିଗଲା । ତା'ପରେ ଟ୍ରେନିଂ ଆଉ ପୋଷ୍ଟିଂ ।

ରାଜା - ହଁ, ତୁ ବି ଗୋଟାଏ ଛୋଟ ରାଜା ।

ବୁଲୁ - ଜିଲ୍ଲାଟାଯାକର ଦାୟିତ୍ୱ ମୋ ମୁଣ୍ଡ ଉପରେ । ସେଥିରେ ପୁଣି ନେତା ମନ୍ତ୍ରୀଙ୍କ ହସ୍ତକ୍ଷେପ । ସମସ୍ତଙ୍କ ମନ ନେଇ କାମ କରିବାକୁ ପଡ଼ିବ । ବାହାରେ ମାଡ଼... ଭିତରେ ମାଡ଼... । କାମ କରିବା ଭାରି କଷ୍ଟ । ଖଣ୍ଡାର ଧାରରେ ବାଟ ଚାଲିବାକୁ ହଉଛି । କେହି ବୁଝିବାକୁ ପ୍ରସ୍ତୁତ ନୁହନ୍ତି ।

ରାଜା - ଏ ସବୁ କିନ୍ତୁ ମୋ ରାଜ୍ୟରେ ନ ଥିଲା । ରାଜା ବିପକ୍ଷରେ ଯିଏ ସ୍ୱର ଉଠାଉଥିଲା, ତାର ଗଳାଟାକୁ କାଟିଦିଆଯାଉଥିଲା । ଶାସନ ପାଇଁ ସେଇଟା ନିହାତି ଜରୁରୀ ।

ବୁଲୁ - ଆଜିର ଗଣତନ୍ତ୍ରରେ ସେଇଟା କ'ଣ ସମ୍ଭବ ? ଏଠି ସମସ୍ତେ ଶାସକ । ସମସ୍ତେ ଅଧିକାର ସାବ୍ୟସ୍ତ କରନ୍ତି । ଖାଲି ସେତିକି ନୁହେଁ । ନିୟନ୍ତ୍ରଣର ଡୋରିଟା ମଧ୍ୟ ସମସ୍ତଙ୍କ ହାତରେ ।

ରାଜା - ହିସାବ କର କଲେକ୍ଟର । କୋଉଟା ? ରାଜତନ୍ତ୍ର ନା' ଗଣତନ୍ତ୍ର ? ମୋ ଶାସନରେ ପ୍ରଜାଏ ଆନନ୍ଦରେ ସୁଖଶାନ୍ତିରେ ଥିଲେ ।

ବୁଲୁ - ତାହେଲେ ରାଜା ବିରୋଧରେ ସ୍ୱର ଉଠିଲା କାହିଁକି ? ରାଜତନ୍ତ୍ର ଭୁଶୁଡ଼ି ପଡ଼ିଲା କାହିଁକି ?

ରାଜା - ଚକ୍ରାନ୍ତ... ଗୋଟାଏ ଷଡ଼୍‌ଯନ୍ତ୍ର । ଜୋର୍‌କରି ରାଜା ଶାସନକୁ ଦବେଇ ଦିଆଗଲା । ହେଲେ ଆମକୁ ଯେଉଁ ପ୍ରତିଶ୍ରୁତି ଦିଆଯାଇଥିଲା, କୁଆଡ଼େ ଗଲା ସେ ପ୍ରତିଶ୍ରୁତି ? ଗଣତନ୍ତ୍ରରେ ସବୁକିଛି ସମ୍ଭବ । ଯା'ରି ନାଁ ପୁଣି ନିର୍ମଳ ଶାସନ !

ବୁଲୁ - ତଥାପି ଗଣତନ୍ତ୍ର ପ୍ରତି ସାରା ବିଶ୍ୱରେ ସମର୍ଥନ ବଢ଼ିବାରେ ଲାଗିଛି ।

ରାଜା - ଗଣତନ୍ତ୍ର...ଗଣତନ୍ତ୍ର... ! (ବିରକ୍ତିରେ) ରାଜତନ୍ତ୍ର ଲୋପ ହେଲା । ଗଣତନ୍ତ୍ର ଆସିଲା । ହେଲେ ଲୋକେ କାହିଁକି ନ ଖାଇ ନ ପିଇ ମରୁଛନ୍ତି ? ସେଇ ଅର୍ଦ୍ଧାହାର...ଅନାହାର...ଯନ୍ତ୍ରଣା.... ! ଗଣତନ୍ତ୍ର ଆଉ କ'ଣ ଅଧିକଟା ଦେଇଛି ? ତା'ପରେ ରାଜାମାନେ କ'ଣ ଏତେ ଖରାପ ଥିଲେ ?

ବୁଲୁ - ସମୟ ଯେତେବେଳେ ଚାହିଁଲା... । ତାର ସୁଅକୁ କିଏ ଅଟକାଇ ପାରିବ ?

ରାଜା - ଆରେ ଏ ସବୁ କଥା ଛାଡ଼ । ହଁ, ରଘୁକୁ କୋଉଠି ?

ବୁଲୁ - ମୋ ବଙ୍ଗଳାରେ ।

ରାଜା - ଏ ଖଣ୍ଡମଣ୍ଡଳରେ ତ ଗୋଟାଏ ବଙ୍ଗଳା ଅଛି । ଆଉ ସେଇଟା ହଉଛି ଭାନୁପ୍ରତାପର ।

ବୁଲୁ - ମଣିମା, ସରକାରୀ ଘର । ସିଏ କୋଉଠୁ ଆପଣଙ୍କ ରାଜବାଟୀ ସାଙ୍ଗରେ ସମାନ ହେବ ?

ରାଜା - ଆରେ ଠିଆଟା କାହିଁକି ହେଇଛୁ ? ବସ୍ ।

[ଚେୟାର ଉପରେ ବସିଛି ବୁଲୁ]

ରଙ୍କ, ଆରେ ଦେଖିଯା । କିଏ ଆସିଛି । ହଁ, ତୁ ମଝିରେ ମଝିରେ ଆସୁଥିବୁ ।

ବୁଲୁ - ସମୟ ପାଇଲେ ନିଶ୍ଚୟ ଆସିବି ।

ରାଜା - ହଁ, ଶୁଣ । ଯେତେବେଳେ ଯାହା ଦରକାର ହବ, ସିଧାସଳଖ ମାଗିବୁ । ଲାଜ କରିବୁନି ।

ବୁଲୁ - ମଣିମା, ମୁଁ-

ରାଜା - ମୋ ପାଖରେ କାମ ଥିଲା ? କହୁନୁ, କହ । ଆରେ ତୁ ମୋ ଦେଓ୍ୱାନର ପୁଅ । ଏଠି ତୋର ବି ଅଧିକାର ଅଛି । ହଁ, କହ ।

ବୁଲୁ - ଆପଣଙ୍କ ନାମରେ ଓ୍ୱାରେଣ୍ଟ ଅଛି ।

ରାଜା - ବୁଲୁ (ରାଗିକରି)

ବୁଲୁ - ହଁ, ଅଭିଯୋଗଟା ମଧ୍ୟ ଗୁରୁତର । ଘଟଣାଟା ବି ରାଜନୈତିକ ମୋଡ଼ ନେଲାଣି ।

ରାଜା - କିଏ ସେହି ଅର୍ବାଚୀନ ? ରାଜା ଭାନୁପ୍ରତାପ ବିରୋଧରେ ଅଭିଯୋଗ କରିବାକୁ ସାହସ କଲା ? ତା' ଜିଭଟା ଯଦି ମୁଁ କାଟି ନ ଦେଇଛି-

ବୁଲୁ - ଆପଣ ସବୁକଥାକୁ ନିଜ ହାତକୁ ନିଅନ୍ତୁ ନାହିଁ । କାରଣ ସମୟ ବଦଳି ଯାଇଛି । ଶାସନ ବଦଳି ଯାଇଛି ।

ରାଜା - ହେଲେ ରାଜା ବଦଳିନି । ମୋ ସିଂହାସନ ଏବେବି ଅଛି ଏବଂ ରହିବ ମଧ୍ୟ । ହଁ, କିଏ ଅଭିଯୋଗ କରିଛି ?

ବୁଲୁ - ତିନିବର୍ଷ ତଳେ ବେଣ୍ଟପୋଖରୀରୁ ମାଛ ଚୋରି ହୋଇଥିଲା । ଦୁଇଜଣ ଲୋକ ଧରା ପଡ଼ିଥିଲେ । ଆପଣ ସେମାନଙ୍କୁ ନିସ୍ତୁକ ମାଡ଼ ମାରିଥିଲେ ।

ରାଜା - ହଁ, ସେମାନଙ୍କ ପାଇଁ ଶାସନ ନିହାତି ଦରକାର ଥିଲା ।

ବୁଲୁ - ସେମାନଙ୍କ ଭିତରୁ ଜଣେ ଗୁରୁତର ଭାବେ ଘାଇଲା ହୋଇଯାଇଥିଲା । ଡାକ୍ତରଖାନାରେ ସେ ଲୋକଟା କାଲି ମରିଗଲା ।

ରାଜା - ଯା'ପରେ ଆଉ କେହି ଚୋରି କରିବାକୁ ସାହସ କରିବେ ନାହିଁ ।

ବୁଲୁ - ଆପଣ ଆଦୌ ବୁଝିପାରୁ ନାହାନ୍ତି । ଯୁଗ ବଦଳି ଯାଇଛି । ଗଣତନ୍ତ୍ରରେ ରାଜାପ୍ରଜା ସମସ୍ତେ ସମାନ ।

ରାଜା - ନା'... ତାହା କେବେ ହୋଇପାରେନା । ରାଜା, ରାଜା । ଆଉ ପ୍ରଜା, ପ୍ରଜା ।

ବୁଲୁ - ଆପଣ ମୋ ପୋଜିସନ କଥା ବୁଝୁ ନାହାନ୍ତି । ସେଇ ଘଟଣାଟା ଗଣ୍ଡଗୋଳ ଆଡ଼କୁ ମୁହାଁଇଲାଣି । କିଛି ଗୋଟାଏ ସମାଧାନ ନ କଲେ- ଆପଣ ଖାଲି ଟିକିଏ ନଇଁ ପଡ଼ିଲେ-

ରାଜା - ରାଜା ଆଜିଯାଏ କାହା ପାଖରେ ମୁଣ୍ଡ ନୁଆଁଇ ନାହିଁ କି ନୁଆଁଇବ ନାହିଁ । ଠିକ୍ ଅଛି । ମୁଁ ଦେଖିବି, କୋଉ ଆଇନ ମୋର କ'ଣ କରିବ ।

ବୁଲୁ - ମଣିମା, ଆଇନକୁ ହାତ ମୁଠାକୁ ନିଅନ୍ତୁ ନାହିଁ । ତା'ପରେ ଯେ ରାଜନୈତିକ ନେତାମାନଙ୍କୁ ଆପଣ ଜାଣି ନାହାନ୍ତି । ଏଇ ଘଟଣାଟାକୁ ସେମାନେ ଗୋଟାଏ ବଡ଼ 'ଇସୁ' କରି ନିର୍ବାଚନ ଲଢ଼ିବେ ।

ରାଜା - ହାତରେ ବନ୍ଧୁକ ଆଉ ଚାବୁକ ଥିଲା ପର୍ଯ୍ୟନ୍ତ ମୋର କେହି କିଛି କରିପାରିବେନି ।

ବୁଲୁ - ସମୟ ବଦଳିଯାଇଛି । ଆପଣ ଆଉ ରାଜା ହୋଇ ରହି ନାହାନ୍ତି । ଏ ଦେଶର ଜଣେ ନାଗରିକ ।

ରାଜା - 'ନା'- ! ସମସ୍ତେ ନାଗରିକ ହୋଇପାରନ୍ତି, ହେଲେ ରାଜାକୁ ଛାଡ଼ି । ସେ ରାଜା ଥିଲା, ରାଜା ଅଛି ଏବଂ ରାଜା ରହିବ.... ।

ବୁଲୁ - ଆପଣ ନିଜ ଜିଦ୍‌ରେ ଅଟଳ ରହିଲେ ବାଧ ହୋଇ ମୋତେ-

ରାଜା - ମାନେ ?

ବୁଲୁ - ଆରେଷ୍ଟ କରିବାକୁ ପଡ଼ିବ ।

ରାଜା - 'ବୁଲୁ'... !

[କ୍ରୋଧରେ ଅନ୍ଧ ହୋଇ ଥରିଛନ୍ତି ରାଜା ଭାନୁପ୍ରତାପ ।]

ରାଜା - ଦେୱାନର ପୁଅ ବୋଲି ଆଜି ଛାଡ଼ିଦେଉଛି । ନଚେତ୍-

ବୁଲୁ - ବୟସର ଉତ୍ତୀର୍ଣ୍ଣ ପାହାଚରେ ପାଦ ଦେଇ ବି ଆପଣ ରାଗିପାରୁଛନ୍ତି ?

ରାଜା - ହଁ, ଶୁଣ୍... ଭଲ ଗତି ଅଛି ତ ଏ ସ୍ଥାନ ଛାଡ଼ି ଚାଲିଯା' । ଆଉ ଦିନେ ଏ ଜାଗା ମାଡ଼ିବୁନି !

ବୁଲୁ - ଏ ଜାଗାଟା କେବେ ଆପଣଙ୍କର ଥିଲା । ହେଲେ ଏବେ ମୋ ଏରିଆ ଭିତରେ । ଆଉ ମୋ ଇଲାକା ଭିତରେ କାହାରି ମନମାନି ଚଳିବନି ।

ରାଜା - ବୁଲୁ, ଏ ସବୁ ମୁଁ ପସନ୍ଦ କରେନା । (ରାଗରେ)

ବୁଲୁ - କଲେକ୍ଟର ନିରଞ୍ଜନ ମହାପାତ୍ରର ଏଇଟା ହଉଛି ଶେଷ ୱାର୍ଣ୍ଣିଂ, ଆପଣଙ୍କୁ... । ଭଲରେ ଭଲରେ ଯଦି ଆପଣ ବାଟକୁ ନ ଆସନ୍ତି-

ରାଜା - କ'ଣଟା କରିବୁ ? ତୋ ନାଲି ଆଖି ତୁ ତୋ ଲୋକଙ୍କୁ ଦେଖାଇବୁ ! ତୋ ଶାସନ, ତୋ ଲୋକଙ୍କ ଉପରେ ଚଳେଇବୁ । ହେଲେ, ଏଠି ନୁହେଁ !

ବୁଲୁ - ଆପଣ ଦେୱାନ ପୁଅ ବୁଲୁକୁ ଦେଖିଛନ୍ତି, ହେଲେ କଲେକ୍ଟର ନିରଞ୍ଜନ ମହାପାତ୍ରକୁ ଚିହ୍ନି ନାହାନ୍ତି... !

ରାଜା - ବାହାରିଯା' କହୁଛି । 'ରଙ୍କ'... 'ରଙ୍କ'...

[ରାଗରେ ଥରିଛନ୍ତି ଭାନୁପ୍ରତାପ । ଭିତରୁ ଆସିଛି ରଙ୍କ । କିଛି ବୁଝିପାରିନି]

ରଙ୍କ - କ'ଣ ହେଲା ମଣିମା ?

ରାଜା - ଏ ଟୋକାଟାକୁ ବୁଝେଇ ଦେ' । ଦେୱାନ ପୁଅ ବୋଲି ଆଜି ଛାଡ଼ିଦଉଛି । ନଚେତ୍ ସିଏ ମୋର ଅସଲ ରୂପ ଦେଖିଥାନ୍ତା ।

ରଙ୍କ - ମଣିମା, ଦେୱାନ ସାହେବ ଆମ ନିଜ ଲୋକ । ବୁଲୁବାବୁ ତାଙ୍କ ପୁଅ । ତା'ପରେ ବୁଲୁବାବୁ, ତମେ କ'ଣ ମଣିମାଙ୍କୁ ଚିହ୍ନିନା ?

ବୁଲୁ - ଚିହ୍ନିଛି ବୋଲି ତ ଏଯାଏ ଧୈର୍ଯ୍ୟ ଧରିଛି । ନଚେତ୍-

ରଙ୍କ - ସବୁଦିନେ ତ ମଣିମା ସେଇଆ । ଆଜି କ'ଣ ତମେ ତାଙ୍କୁ ନୂଆ କରି ଦେଖୁଛ ? ଟିକେ ନଇଁପଡ଼ । ସବୁ ଠିକ୍ ହୋଇଯିବ ।

ବୁଲୁ - ଡାକ୍ତରଖାନାରେ ଯେଉଁ ଲୋକଟା ମରିଗଲା, ଲୋକେ ତା' ପାଇଁ ତାତି କରି ଅଛନ୍ତି । ସୁଯୋଗ ପାଇଲେ ଏ ରାଜବାଟୀକୁ ଶେଷ କରିଦେବେ ।

ରାଜା - ବୁଲୁ, ରାଜା ଭାନୁପ୍ରତାପ ହାତରେ ବନ୍ଧୁକ ଥିବାଯାଏ-

ବୁଲୁ - ସେ ବନ୍ଧୁକର ଲାଇସେନ୍‌ସ ନାହିଁ ।

ରାଜା - ବୁଲୁ, ଚାଲିଯା' କହୁଛି । ନଇଲେ-

[ବନ୍ଧୁକ ଆଣି ମାରିବାକୁ ବସିଛନ୍ତି । ପଛପଟୁ ମଣିମାଙ୍କୁ ଭିଡ଼ି ଧରିଛି ରଙ୍କ]

ରାଜା - ରାଜାର ରକ୍ତରେ ନିଆଁ ଲାଗିଲେ ସେ କାହାରି ନୁହେଁ । ମତେ ଛାଡ଼ିଦେ... ଛାଡ଼ିଦେ...

ରଙ୍କ - ବୁଲୁବାବୁ, ତମେ ଚାଲିଯାଅ ।

ବୁଲୁ - ଏବେ ଫେରିଯାଉଛି । ତୁ ମଣିମାଙ୍କୁ ବୁଝେଇଦେ । ମୋ ଲୋକ ଏ ସବୁ କେବେ ବରଦାସ୍ତ କରିବେ ନାହିଁ । ମଣିମା ଯାହା କରୁଛନ୍ତି ଆଦୌ ଭଲ କରୁ ନାହାନ୍ତି । ଆଇନ ନିକଟରେ ତାଙ୍କୁ ସରେଣ୍ଡର କରିବାକୁ ପଡ଼ିବ ।

ରାଜା - 'ବୁଲୁ'...

[ରାଗରେ ଚିତ୍କାର କରି ଉଠିଛନ୍ତି ରାଜା । ଫେରିଯାଇଛି ବୁଲୁ...]

# ଚତୁର୍ଦ୍ଦଶ ଦୃଶ୍ୟ

ସ୍ଥାନ - ଡ୍ରଇଂରୁମ୍
ସମୟ - ସଂଧ୍ୟା
ଚରିତ୍ର - ବିକ୍ରମ, ଅହଲ୍ୟା

[ରୟାଲ ଡ୍ରଇଂରୁମ୍ । ସମୟ ସଂଧ୍ୟା । ରାଜା ଭାନୁପ୍ରତାପଙ୍କୁ ଅପେକ୍ଷା କରିଛନ୍ତି ବିକ୍ରମ । ସିଗାରେଟ୍ ଲଗାଇଛନ୍ତି ।]

ବିକ୍ରମ - ରଙ୍କ, ଆରେ ଚା'ଟା କରିବାକୁ କେତେ ସମୟ ଲାଗୁଛି ?

[ଟ୍ରେ'ରେ ଦୁଇକପ୍ ଚା' ଧରି ଆସିଛି ଅହଲ୍ୟା । ବିକ୍ରମ ଅହଲ୍ୟାକୁ ଦେଖି ବିସ୍ମିତ ହୋଇଛି]

ଅହଲ୍ୟା - ନିଅନ୍ତୁ ଅଙ୍କଲ ।

ବିକ୍ରମ - ତମେ- ?

ଅହଲ୍ୟା - ଅଙ୍କଲ ଚିଠି ଦେଇ ଡକେଇଥିଲେ । ମୁଁ ଦିଲ୍ଲୀରେ ରହେ ।

ବିକ୍ରମ - ତମେ ?

ଅହଲ୍ୟା - ମୋ ନାଁ 'ଅହଲ୍ୟା' । ରଙ୍କ ନାହିଁ । ଅଙ୍କଲଙ୍କ ସାଙ୍ଗରେ ମେଡିକାଲ ଯାଇଛି ।

ବିକ୍ରମ - ତା' ଦେହଟା ବାରମ୍ବାର ଖରାପ ହଉଛି । ସିଏ କ'ଣ କରିବ ! ତା' ସ୍ୱଭାବଟା ତ ସେଇଆ । ହେଲେ ମା', ନାଲି ଚା' ବଦଳରେ-

ଅହଲ୍ୟା - ଅମୁଲ ମୁଁ ସାଙ୍ଗରେ ନେଇ ଆସିଥିଲି ।

ବିକ୍ରମ - ଭାନୁ କଣ ଅମୁଲ ଚା'- ?

ଅହଲ୍ୟା - ସେ ମନା କରୁଥିଲେ । ମୁଁ ଜୋର୍‌କରି ତାଙ୍କୁ ଖୁଆଇଛି ।

ବିକ୍ରମ - ବୋଧହୁଏ ଏ ବର୍ଷ ପାଇଁ ଏଇଟା ସବୁଠାରୁ ବଡ଼ ନିଉଜ୍ ! ସିଏ ମଣିଷ ନୁହେଁ, ଗୋଟାଏ ବାଘ । ବାଘକୁ ପୋଷା ମନେଇବା କାଠିକର ପାଠ ।

ଅହଲ୍ୟା - ବଡ଼ କଷ୍ଟରେ ତାଙ୍କୁ ମନାଇଛି ।

ବିକ୍ରମ - ଦେଖ୍ ମା'... କିଛିଦିନ ଏଇଠି ରହିଯା'... । ଅନ୍ତତଃ ସିଏ କିଛିଟା ବଦଳିଯାଉ । ତା' ଭିତରେ ଥିବା ରାଜାର ଭୂତଟା ନ ଯିବା ପର୍ଯ୍ୟନ୍ତ ସେ ନର୍ମାଲ ଅବସ୍ଥାକୁ ଫେରିବନି ।

ଅହଲ୍ୟା - ମୁଁ ମୋ ଚେଷ୍ଟା ଜାରି ରଖିଛି । ଭାବୁଛି ସଫଳ ହେବି ।

ବିକ୍ରମ - ଏଡ଼େବଡ଼ ରାଜବାଟୀ ଧ୍ୱଂସ ହେବାକୁ ବସିଲାଣି । ତାର କୌଣସି କଥାକୁ ଚିନ୍ତା ନାହିଁ । ସ୍ତ୍ରୀ, ପୁତ୍ର କାହାରି ପ୍ରତି ଟିକିଏ ହେଲେ ମମତା ଥାଆନ୍ତା... ! ରାଜା ତ... ! ଅନ୍ୟ ଉପରେ କେବଳ ଆଦେଶ ଦେଇପାରିବ... !

ଅହଲ୍ୟା - ଧୀରେ ଧୀରେ ସେ ବଦଳୁଛନ୍ତି । ଭାବୁଛି-

ବିକ୍ରମ - କୁମାର ଯଦି ଏଠି ରହନ୍ତା, ହୁଏତ କିଛିଟା.... ! ସିଏ କୋଉ ରଖେଇଦବ ! ନିଜ ପୁଅକୁ ବି ଆଦେଶ ଦେବ.... !

ଅହଲ୍ୟା - ଏକାକୀ ରହି ରହି ସେ ଗୋଟାଏ ଭିନ୍ନ ମଣିଷ ହୋଇଯାଇଛନ୍ତି । ନିଃସଙ୍ଗତା ଗୋଟାଏ ବ୍ୟାଧି ।

ବିକ୍ରମ - ଖାଲି ସେତିକି ନୁହେଁ ମା । ଯଦି କୁମାର ସତକୁ ସତ ସେ ଝିଅକୁ ବିବାହ କରିଯାଏ... ?

ଅହଲ୍ୟା - ମାନେ ? କୋଉ ଝିଅ ?

ବିକ୍ରମ - ସେ କିଛି କହିନି ବୋଧେ ! (Pause) କୁମାର ଦିଲ୍ଲୀରେ ଗୋଟିଏ ଝିଅକୁ ଭଲ ପାଉଛି... ।

ଅହଲ୍ୟା - ଭଲପାଇବାଟା କ'ଣ ଭୁଲ୍ ? ଅନ୍ୟାୟ ?

ବିକ୍ରମ - ଭୁଲ୍‌ଟା ସେଠି ନାହିଁ । ଅସଲ କଥା ହେଉଛି, ଝିଅଟା ଗୋଟାଏ ନର୍ତ୍ତକୀ... ମାନେ ଡ୍ୟାନ୍ସର... ।

ଅହଲ୍ୟା - ଓ, ଡ୍ୟାନ୍ସରମାନେ ମଣିଷ ନୁହନ୍ତି !

ବିକ୍ରମ - ନର୍ତ୍ତକୀ ପ୍ରତି ତାର ଗୋଟାଏ ଘୃଣାଭାବ ରହିଆସିଛି । ସହଜରେ ସେ ଗ୍ରହଣ କରୁନି ।

ଅହଲ୍ୟା - ସିଏ ସେଇ ପୁରୁଣା ବର୍ଣ୍ଣବୋଧ ଭିତରେ ରହିଯାଇଛନ୍ତି । ନର୍ତ୍ତକୀରୁ ଡ୍ୟାନ୍ସର ଅନେକ ଦୂର । ସେ କଥା ସିଏ ବା କେମିତି ଜାଣିବେ !

ବିକ୍ରମ - ଅନେକଥର ବୁଝାଇଛି । ହେଲେ ସେ ବୁଝିବାକୁ ନାରାଜ । ରାଜାଟାଏ ତ ! ନର୍ତ୍ତକୀକୁ ସେ ଭଲ ମନରେ ଗ୍ରହଣ କରିପାରୁନି ।

ଅହଲ୍ୟା - ନର୍ତ୍ତକୀ ତ ସେଇ ରାଜାମାନଙ୍କର ସୃଷ୍ଟି । ତା'ପରେ ମା' ପେଟରୁ ସେମାନେ ତ ନର୍ତ୍ତକୀ ହୋଇ ଜନ୍ମ ହୋଇ ନ ଥିଲେ !

ବିକ୍ରମ - ରାଜା ଅବୁଝା ! କିଏ ତାକୁ ବୁଝେଇବ ! ଯାହା ଥରେ ତା' ମୁଣ୍ଡ ଭିତରେ ବସା ବାନ୍ଧିଛି, ସହଜରେ ତାକୁ ବାହାର କରିହବନି ।

ଅହଲ୍ୟା - ସମୟ ଆସିଯାଇଛି । ରାଜାମାନଙ୍କ ବ୍ରେନ୍‌ର ଅପରେସନ୍ ଦରକାର । ଆଉ ସେ ଅପରେସନ୍ ଆପଣମାନେ ହିଁ କରିବେ ।

ବିକ୍ରମ - କ'ଣ କହୁଛୁ ମା' ?

ଅହଲ୍ୟା - ସମୟ ସାଥିରେ ପାଦଦେଇ ଚାଲିବା ହଉଛି ବ୍ୟକ୍ତିର ଧର୍ମ । ଆଉ ସେ ଧର୍ମରେ ଖିଲାପ ହେଲେ କିଛି ନା କିଛି କ୍ଷତି ନିଶ୍ଚୟ ଘଟିବ ।

ବିକ୍ରମ - ମା'... ସିଏ ମୋ ପିଲାଦିନର ସାଙ୍ଗ । ତାକୁ ମୁଁ ଯେତିକି ଜାଣିଛି...

ଅହଲ୍ୟା - ସେତିକିବେଳୁ ଯଦି ଆପଣମାନେ ପ୍ରତିବାଦ କରିଥାନ୍ତେ, ହୁଏତ ଆଜି ତାଙ୍କର ଏମିତି ଅବସ୍ଥା ହୋଇ ନ ଥାନ୍ତା !

ବିକ୍ରମ - ମା', ସମୟ ସେ ସୁଯୋଗ ଦେଇ ନ ଥିଲା । ଆଜି ସିନା ସମୟ ବଦଳି ଯାଇଛି, ହେଲେ ସେଦିନ....

ଅହଲ୍ୟା - ହଁ, ଆମ ସମାଜ ବ୍ୟବସ୍ଥାର ସାଧାରଣ ଭୁଲ୍‌ପାଇଁ ଆଜି ଯଥେଷ୍ଟ ମୂଲ୍ୟ ଦେବାକୁ ପଡୁଛି । ଜାଣିଛନ୍ତି, ଏଥିପାଇଁ ଦାୟୀ କିଏ ?

[ଅହଲ୍ୟାକୁ ଚାହିଁରହିଥିଲେ ବିକ୍ରମ । କିଛି କହିପାରୁ ନ ଥିଲେ ।]

# ପଞ୍ଚଦଶ ଦୃଶ୍ୟ

ସ୍ଥାନ - ଡ୍ରଇଂରୁମ୍
ସମୟ - ଦିବସ
ଚରିତ୍ର - ରାଜା, ଦେଓ୍ୱାନ, ରଙ୍କ

[ରୟାଲ ଡ୍ରଇଂରୁମ୍ । ରେଡିଓରୁ ଭାସି ଆସୁଥିଲା କ୍ଲାସିକାଲ ସଂଗୀତ । ତନ୍ମୟ ହୋଇ ଗୀତ ଶୁଣୁଥିଲେ ରାଜା ଭାନୁପ୍ରତାପ । ଗୀତ ଭିତରେ ସେ ପୂରାପୂରି ହଜି ଯାଇଥିଲେ । ଟେବୁଲ ଉପରେ ନାଲି ଚା' ସେମିତି ରହିଥିଲା । ରାଜା ଭୁଲି ଯାଇଥିଲେ ପିଇବାକୁ । ଦେଓ୍ୱାନ ଆସିଛନ୍ତି । ରାଜା ତାଙ୍କର ଉପସ୍ଥିତି ଜାଣିପାରି ନାହାନ୍ତି । ହଠାତ୍ ଗୀତ ବନ୍ଦ ହୋଇଯାଇଛି । ଚେୟାର ଉପରୁ ଉଠି ପଡ଼ିଛନ୍ତି ରାଜା...]

ରାଜା - ଗୀତ... ଗୀତ କିଏ ବନ୍ଦ କଲା ? ରଙ୍କ...ରଙ୍କ...

ଦେଓ୍ୱାନ - କରେଣ୍ଟ ଚାଲିଗଲା ମଣିମା ।

[ନମସ୍କାର କରିଛନ୍ତି ଭାନୁପ୍ରତାପଙ୍କୁ ଦେଓ୍ୱାନ]

ରାଜା - କେତେବେଳେ ଆସିଲ ଦେଓ୍ୱାନ ?

ଦେଓ୍ୱାନ - ଏଇ ସାଂଙ୍ଗେ ସାଙ୍ଗେ ମଣିମା ।

ରାଜା - ହଁ... [ଦୀର୍ଘଶ୍ୱାସ ପକାଇଛନ୍ତି]

ଦେଓ୍ୱାନ - ମଣିମା, ଚା'ଟା ପିଇ ନାହାନ୍ତି ? ଥଣ୍ଡା ହୋଇ ଯାଇଥିବ !

ରାଜା - ହଁ... ! ରଙ୍କ ଅନେକବେଳୁ ଦେଇଗଲାଣି ।

ଦେଓ୍ୱାନ - ଗରମ କରିବାକୁ କହିବି ?

ରାଜା - ନା' ଥାଉ... ।

ଦେଓ୍ୱାନ - ମଣିମା, ମୁଁ ବୁଲୁକୁ ବୁଝେଇ ଦେଇଛି । ଘଟଣାଟାକୁ ଆଉ ଖୋଳତାଡ଼ ନ କରି ଚପେଇଦବ । ଭାରି ମନଦୁଃଖ କରୁଥିଲା । ଆପଣଙ୍କ ସାଙ୍ଗରେ କ'ଣ ଟିକେ...

ରାଜା - ପିଲାଲୋକ ! ତା' କଥାକୁ କ'ଣ ମୁଁ ଧରି ବସିଛି ! ତା'ପରେ ମୋ ଦେଓ୍ୱାନର ପୁଅ... ।

ଦେଓ୍ୱାନ - ଆଜିକାଲିକା ଏ ରାଜନୈତିକ ନେତାଗୁଡ଼ାକ କ'ଣ ତାକୁ ବସେଇ ଉଠେଇ ଦଉଛନ୍ତି ! ତିଳକୁ ତାଳ କରିବା ସେମାନଙ୍କର ନିତିଦିନିଆ ଅଭ୍ୟାସ । ଯା'ହଉ... ଘଟଣାଟା ବଡ଼ କଷ୍ଟରେ ଚପିଯାଇଛି... ।

ରାଜା - ଦେଓ୍ୱାନ, ମୁଁ ନ ଥିବା ଅବସ୍ଥାରେ ସେ ଫଟୋଗ୍ରାଫର ଆସିଥିଲା କି ? କ'ଣ ତା' ନାଆଁ ତ... ?

ଦେଓ୍ୱାନ - 'ମନୋଜ'...

ରାଜା - ହଁ... । ତାକୁ ମନା କରିଦେବ । ଆଉ ଫଟୋ ଉଠାଇବା ଦରକାର ନାହିଁ । ସେ ଯଦି ଏଠିକି ଆସିବ, ତାହେଲେ ଅନୁମତି ନେଇ ଆସିବ । ମୁଁ ନ ଥିବା ଅବସ୍ଥାରେ କିଛି ଫଟୋ ସେ ଉଠାଇଛି... । ସାଧାରଣ ଭଦ୍ରାମି ବି ଜାଣିନି...

ଦେଓ୍ୱାନ - 'ମଣିମା'...

ରାଜା - କ'ଣ ହେଲା, କୁହ ।

ଦେଓ୍ୱାନ - ମଣିମା ରାଗିବେନି ତ ?

ରାଜା - କୁହ ଦେଓ୍ୱାନ । ମୋ ପାଖରେ ସଂକୋଚ କ'ଣ ?

ଦେଓ୍ୱାନ - ଠିକ୍ ଅଛି । ଯାହା ଦଣ୍ଡ ଦେବେ ସହିଯିବି ।

ରାଜା - ଆରେ କଥାଟା କ'ଣ ନ କହି...

ଦେଓ୍ୱାନ - ମଣିମା, ଏଇ ଫଟୋଟି ଦେଖିଲେ-

[ଫଟୋ ପକେଟରୁ ବାହାର କରି ଦେଓ୍ୱାନ ଦେଖାଇଛନ୍ତି ଭାନୁପ୍ରତାପଙ୍କୁ...]

ରାଜା ଏ' ତ କୁମାର । ହେଲେ ତା' ପାଖରେ ଝିଅ... ? କୋଉଠି ତାକୁ ଦେଖିଲାଭଳି ମନେ ହେଉଛି ! ମୁହଁଟା ଚିହ୍ନାଚିହ୍ନା ପରି ଲାଗୁଛି... !

ଦେଓ୍ୱାନ - କେମିତି ହେଇଛି ଆମ କୁମାରର ପସନ୍ଦ ? କିଛି ମନ୍ଦ ହେଇନି । କନ୍ୟାର ବେଶ କି ସୁନ୍ଦର ଦେଖାଯାଉଛି !

ରାଜା - ଇଏ ସେ ନାଚବାଲୀ ନୁହେଁ ତ ? ଶାଢ଼ି... କୁଙ୍କୁମ... ଅଳତା... !!! ହେଲେ ମୁହଁଟା...

[ଗଭୀର ଚିନ୍ତା ଭିତରେ ବୁଡ଼ିଯାଇଛନ୍ତି ରାଜା ଭାନୁପ୍ରତାପ୍‌। ମନେ ପକାଇବାକୁ ଚେଷ୍ଟା କରିଛନ୍ତି]

ରାଜା - ନା'... ମନେପଡୁନି । ମୁହଁଟା କୋଉଠି ଦେଖିଛି...

ଦେଓ୍ୱାନ - କୁମାରବାବୁ ଏ ଫଟୋ ମୋ ପାଖକୁ ପଠାଇଛନ୍ତି । ଶୁଣିଛି...

ରାଜା - କ'ଣ ଶୁଣିଛ ?

ଦେଓ୍ୱାନ - ସେମାନେ ବିବାହ କରିସାରିଛନ୍ତି । ଆର୍ଯ୍ୟ ସମାଜରେ ।

ରାଜା - 'ନା'... ! ମୋ ବିନାନୁମତିରେ କୁମାର ବିବାହ କରିପାରେନା ।

ଦେଓ୍ୱାନ - ମନୋଜଠାରୁ ଯାହା ଶୁଣିଛି, ସେମାନେ ବହୁତ ବାଟ ଆଗେଇ ଯାଇଥିଲେ । ବିବାହ କରିବା ଛଡ଼ା ଅନ୍ୟ ଉପାୟ ନ ଥିଲା ।

ରାଜା - ଉପାୟ...ଉପାୟ... ! ଉପାୟଟା ରାଜା ତିଆରି କରେ । ହେଲେ ସେଇଟା ରାଜବଂଶ ପାଇଁ ନୁହେଁ । ହଁ, ତାକୁ ଲେଖିଦିଅ । ଏ ବିବାହକୁ ମୁଁ ଅସ୍ୱୀକାର କରୁଛି । ସେ ନାଚବାଲୀ ରକ୍ଷିତା ହୋଇ ରହିପାରେ, ମାତ୍ର ରାଜବଧୂର ସମ୍ମାନ ପାଇପାରେନା... !

ଦେଓ୍ୱାନ - 'ମଣିମା'...

ରାଜା - ଦେଓ୍ୱାନ, ଓଃ... ! ମତେ ଟିକିଏ କିଛି ସମୟ ଏକୁଟିଆ ଛାଡ଼ିଦିଅ । କୁମାର ଜାଣେନି, ସେ ମୋର କେଉଁ ଜାଗାରେ ଆଘାତ କରିଛି !

ଦେଓ୍ୱାନ - ମୁଁ ତା'ହେଲେ ଯାଉଛି ମଣିମା... ।

[ଦେଓ୍ୱାନ ବାହାରି ଯାଇଛନ୍ତି । ଘାଇଲା ବାଘ ଭଳି ଭାନୁପ୍ରତାପ ବିବ୍ରତ ଅବସ୍ଥାରେ ପଦଚାଳନା କରିଛନ୍ତି । ଚିତ୍କାର କରି ଉଠିଛନ୍ତି । ଭୟରେ ଭିତରୁ ଦଉଡ଼ି ଆସିଛି ରଙ୍କ]

ରାଜା - 'ନା'...

ରଙ୍କ - 'ମଣିମା'...(ପ୍ରବେଶ କରି)

ରାଜା - ଏଁ... ! (ଅନ୍ୟମନସ୍କ ଭାବେ)

ରଙ୍କ - ଚା' ଆଣିବି ମଣିମା ?

ରାଜା - ଚା' ନୁହେଁ, ଚାବୁକ ।

ରଙ୍କ - 'ମଣିମା'...(ଭୟରେ)

ରାଜା - ଯାହା କହୁଛି, ସେଇଆ କର । ଆଣ...ଆଣ ମୋ ଚାବୁକ ।

[ଚାବୁକଟି ଆଣି ଦେଇଛି ରଙ୍କ]

ରାଜା - ନେ' ଧର... ।

ରଙ୍କ - (ଚାବୁକ ଧରି) 'ମଣିମା'...

ରାଜା - ପିଟ୍...ପିଟ୍ ମୋ ପିଠିକି... ।

ରଙ୍କ - 'ମଣିମା'... ।

ରାଜା - ପିଟ୍ ପିଟ୍ ମୋ ପିଠିକି... ।

ରଙ୍କ - 'ମଣିମା'...

ରାଜା - ଯାହା କହୁଛି ସେଇଆ କର । ପିଟ୍... ।

ରଙ୍କ - ମୁଁ ପାରିବିନି ମଣିମା । ଆପଣ ମୋର ଅନ୍ନଦାତା । ଏମିତି କାମ ମୁଁ କରିପାରିବିନି ।

ରାଜା - 'ରଙ୍କ' (ରାଗରେ)

ରଙ୍କ - ଯାହା ଦଣ୍ଡ ଦେବେ ଦିଅନ୍ତୁ । ସବୁ ସହିବାକୁ ମୁଁ ପ୍ରସ୍ତୁତ ।

ରାଜା - ଏତେ ସ୍ପର୍ଦ୍ଧା... ! ମୋ ଆଦେଶ ଅମାନ୍ୟ କରିବୁ !

[ଚାବୁକରେ ପିଟିଛନ୍ତି ରଙ୍କକୁ । କ୍ଲାନ୍ତ ହୋଇପଡ଼ିଲା ପରେ ଫିଙ୍ଗି ଦେଇଛନ୍ତି ଚାବୁକ । ରାଜାଙ୍କ ପାଦ ଦୁଇଟାକୁ ଜାବୁଡ଼ି ଧରିଛି ରଙ୍କ ।]

ରାଜା - 'ରଙ୍କ'... (ଦୁଃଖରେ)

ରଙ୍କ - ମଣିମା, ନିଜ ଲୋକକୁ ମାରିଲେ ସେଇଟା କ'ଣ ମାଡ଼ ବୋଲି ଗଣାଯାଏ ?

[ରଙ୍କକୁ କୁଣ୍ଢାଇ ପକାଇଛନ୍ତି ଭାନୁପ୍ରତାପ]

# ଷୋଡ଼ଶ ଦୃଶ୍ୟ

ସ୍ଥାନ - ରୟାଲ ଡାଇନିଂ ଟେବୁଲ
ସମୟ - ମଧ୍ୟାହ୍ନ
ଚରିତ୍ର - ରାଜା, ରଙ୍କ

[ରୟାଲ ଡାଇନିଂ ରୁମ୍ । ଡାଇନିଂ ଟେବୁଲ ଉପରେ ସବୁ ଜିନିଷ ସେମିତି ରହିଛି । ରଙ୍କ ପ୍ରତ୍ୟେକଟି ଜିନିଷକୁ ସଫା କରିବାରେ ଲାଗିଛି । କାନ୍ଦୁଛି । କୋହ ପରେ କୋହ ଉଠିଛି । ବାହାରୁ ଆସିଛନ୍ତି ରାଜା ଭାନୁପ୍ରତାପ...]

ରାଜା - ରଙ୍କ, ପାଣି ଗ୍ଲାସ ଆଣ ।

[ରଙ୍କ ଗ୍ଲାସରେ ପାଣି ନେଇ ଦେଇଛି]

ରାଜା - ଆରେ, ଏ ମାସର ଟଙ୍କା- ?

ରଙ୍କ - ଆଉ ଆସିବନି ମଣିମା ।

ରାଜା - କ'ଣ ହୋଇଛି ତୋର ? କାନ୍ଦୁଛୁ କାହିଁକି ? ତିନିଦିନ ହେବ ତୋ ମନ ଖରାପ । କ'ଣ ହେଇଛି ?

ରଙ୍କ - ନା' ମଣିମା, କିଛି ନାହିଁ । ରାଣୀମା'ଙ୍କ କଥା ଭାରି ମନେପଡୁଛି ।

ରାଜା - ଯିଏ ଆପେ ଯାଇଛି, ସେ ଆପେ ଆସିବ । ଏ ରାଜବଂଶର ଗୋଟାଏ ମାନସମ୍ମାନ ଅଛି । ତାକୁ ଯେ ଆଘାତ କରେ, ତାର ଏ ଘରେ ସ୍ଥାନ ନାହିଁ । ଏଇଟା ହଉଛି ଏ ରାଜବଂଶର ଗୋଟାଏ ପରମ୍ପରା... ।

ରଙ୍କ - 'ମଣିମା'...

[କିଛି କହିପାରିନି । ଲକ୍ଷ୍ୟ କରିଛନ୍ତି ରାଜା ଭାନୁପ୍ରତାପ...]

ରାଜା - 'ରଙ୍କ'...

ରଙ୍କ - ଆପଣଙ୍କୁ କେତେ ବୁଝାଇଛି । ରାଣୀମା'ଙ୍କୁ ନେଇଆସନ୍ତୁ । ଅନ୍ତତଃ ମୁଁ ଟିକିଏ ଶାନ୍ତିରେ ମରିପାରିବି । ହେଲେ ଆପଣ ତ ରାଜା । ଏ ବୁଢ଼ା ଚାକରଟା କଥା କାହିଁକି ଶୁଣିବେ... ?

ରାଜା - ସତ କହ, କ'ଣ ହେଇଛି ?

ରଙ୍କ - 'ମଣିମା'...

[ଲୁହ ଜକେଇ ଆସିଛି ଆଖିରେ । ବାହାରି ଆସିଛି କୋହ...]

ରାଜା - ତୁ କିଛି ଗୋଟାଏ ମତେ ଲୁଚାଉଛୁ ।

ରଙ୍କ - ଏ ରଙ୍କ ଉପରେ ଭରସା ପାଉନି ?

ରାଜା - ଆରେ ରଙ୍କ, ଦେଓ୍ବାନ ଯେଉଁ ଭାକୁର ମାଛ ପଠେଇଥିଲା, ଅଛି ନା' ସରିଯାଇଛି ?

ରଙ୍କ - ଆଉ ଗୋଟାଏ ବଞ୍ଚିଛି ।

ରାଜା - ଚଳିଯିବ । ସେଇଟାକୁ ଆଜି ରାନ୍ଧିଦେ । ଭାରି ଇଛା ହଉଛି, ଭାକୁର ମାଛ ଖାଇବାକୁ ।

ରଙ୍କ - ମଣିମା, ମୋ ଦେହଟା ଭଲ ଲାଗୁନି । ଟିକେ ଦେହଟା ଠିକ୍ ହେଇଯାଉ । ରାନ୍ଧିଦେବି ।

ରାଜା - 'ରଙ୍କ'... !

ରଙ୍କ - ଆଉ ତ ତିନିଟା ଦିନ । ଚାହୁଁ ଚାହୁଁ ଗଡ଼ିଯିବ । ତା'ପରେ ଖାଇବେ । ଆଜି ମତେ ବାଧ କରନ୍ତୁ ନାହିଁ । ମୁଁ ପାରିବି ନାହିଁ... ।

ରାଜା - ରଙ୍କ, ତୁ ମୋ ଆଦେଶ ଅମାନ୍ୟ କରିବୁ ?

ରଙ୍କ - ହଁ....ହଁ... ମଣିମା । ମୁଁ ଆଜି କାହାରି କଥା ଶୁଣିବି ନାହିଁ । ଏତେଦିନ ମୁଁ ଆପଣଙ୍କ କଥା ମାନିଆସିଛି । ଆଉ ଆପଣ ମୋର ଏଇ ଗୋଟାଏ କଥା ରଖିବେନି ?

ରାଜା - 'ରଙ୍କ' (ଚାହିଁଛନ୍ତି ରାଗିକରି)

ରଙ୍କ - ମଣିମା, ଆଜି 'ଦଶ'ଟା । 'ଦଶ'ରେ ମାଛ ଖାଇବେ ? ନା' ମଣିମା, ନା । ଆଉ ତିନିଟା ଦିନ । ଦେଖୁ ଦେଖୁ ଚାଲିଯିବ ।

ରାଜା - ତୋ ମୁଣ୍ଡ ଠିକ୍ ଅଛି ତ ?

ରଙ୍କ - କହିଛି ତ ଦେହଟା ଭଲ ଲାଗୁନି । ତିନିଦିନ ପରେ ମାଛଟା ରାନ୍ଧିଦେବି । ଖାଇବେ ।

ରାଜା - 'ନା'... । ତୁ ଆଜି ରାନ୍ଧିବୁ । ଏବେ । ଏଇଟା ମୋ ଆଦେଶ ।

ରଙ୍କ - ମଣିମା, ଅବାଧ ହୁଅନ୍ତୁ ନାହିଁ । ରାଣୀମା' କ'ଣ ଆଉ ଫେରିଆସିବେ ?

ରାଜା - 'ରଙ୍କ' ! (କିଛି ବୁଝି ନ ପାରି)

ରଙ୍କ - ମଣିମା, ରାଣୀମା' ଆମ ସମସ୍ତଙ୍କୁ ଛାଡ଼ି ଆରପାରିକୁ ଚାଲିଯାଇଛନ୍ତି । ଆଜି ତାଙ୍କର 'ଦଶ' । ଦଶାହ । ଆଜିକି ତାଙ୍କର ମରିବା ଦଶଦିନ ହୋଇଗଲା ।

[ରାଜା ଭାନୁପ୍ରତାପଙ୍କ ଭିତରେ ଅସ୍ୱାଭାବିକ ପରିବର୍ତ୍ତନ ଦେଖାଦେଇଛି । ସେ ଥରିବାକୁ ଆରମ୍ଭ କରିଛନ୍ତି...]

ରାଜା - 'ସୁଭଦ୍ରା'-

ରଙ୍କ - ଖାଲି ସେତିକି ନୁହେଁ । ପ୍ରତି ମାସରେ ମନିଅର୍ଡର ତାଙ୍କ ପାଖରୁ ଆସୁଥିଲା । ହେଲେ ଆପଣ ମଣିଷ ଚିହ୍ନିବାରେ ଭୁଲ୍ କଲେ... ।

[ରାଜା ଭାନୁପ୍ରତାପଙ୍କ ମୁଖମଣ୍ଡଳ ବିକୃତ ହୋଇ ଉଠିଛି । ସେ କିଛି ଗୋଟାଏ ଉଚ୍ଚାରଣ କରିବାକୁ ଚାହୁଁଥିଲେ, ମାତ୍ର ପାରୁ ନ ଥିଲେ । ମୁହଁ ଲାଲ୍ ପଡ଼ିଯାଇଥିଲା ।]

ରାଜା - ସୁ...ସୁ...ସୁ... ।

ରଙ୍କ - ମଣିମା, କ'ଣ ହେଲା ? କିଛି କହୁ ନାହାନ୍ତି କାହିଁକି ?

[ଭାନୁପ୍ରତାପ ଥରିବାକୁ ଆରମ୍ଭ କରିଛନ୍ତି । ଗୋଟାଏ ଗୋଡ଼, ଗୋଟାଏ ହାତ ଧୀରେ ଧୀରେ ଅଚଳ ହୋଇ ଆସୁଥିଲା ।]

ରଙ୍କ - ମଣିମା, ଇୟେ ଆପଣଙ୍କର କ'ଣ ହେଲା ? ମୁଁ ଏଇ ସାଙ୍ଗେ ସାଙ୍ଗେ ଡାକ୍ତର ଡାକିଆଣୁଛି ।

ରାଜା - ର...ର...ର...

[ପୂରାଭାବେ ନାମ ଉଚ୍ଚାରଣ କରିପାରୁ ନ ଥିଲେ ରାଜା । ରଙ୍କ କ'ଣ କରିବ କିଛି ଠିକ୍ କରିପାରୁ ନ ଥିଲା ।]

ରଙ୍କ - ମୁଁ ଯେ କ'ଣ କରିବି... ।

[ନିଜର ଗୋଡ଼କୁ ବାରମ୍ବାର ଇଙ୍ଗିତ କରୁଥିଲେ ରାଜା ଭାନୁପ୍ରତାପ...]

ରଙ୍କ - ମଣିମା, ଗୋଡ଼ କ'ଣ ହେଲା ? ଧୀରେ ଧୀରେ ଉଠାନ୍ତୁ । ଧୀରେ...ହଁ ଧୀରେ... ।

[ରାଜା ପାଦ ଉଠାଇବାକୁ ଚେଷ୍ଟା କରୁଥିଲେ । ମାତ୍ର ପାରୁ ନ ଥିଲେ । ମୁଖମଣ୍ଡଳରେ ଏହାର ସ୍ପଷ୍ଟ ଛାପ ଦେଖିବାକୁ ମିଳୁଥିଲା]

ରଙ୍କ - ଭୟ କରନ୍ତୁ ନାହିଁ ମଣିମା । ଏ ରଙ୍କ ଅଛି । ମୋ କାନ୍ଧରେ ଭରା ଦେଇ ଉଠାନ୍ତୁ... । ହଁ...ହଁ... ।

[ଭାନୁପ୍ରତାପଙ୍କ ଆଖିରୁ ଲୁହ ଝରି ଆସିଛି । ମାତ୍ର ପାଦ ଉଠି ନାହିଁ । ମୁହଁ ବାଙ୍କିଯାଇଛି । ଗୋଟିଏ ପଟ ହାତ ପାଦ ଅଚଳ ହୋଇଯାଇଛି । ସେ ପାରାଲିସିସ୍ ଦ୍ୱାରା ଆକ୍ରାନ୍ତ ହୋଇଛନ୍ତି । ରଙ୍କ କାନ୍ଧରେ ଭରା ଦେଇଛନ୍ତି ଭାନୁପ୍ରତାପ । ମୁଖମଣ୍ଡଳରେ ବିକଳଭାବ ଫୁଟିଉଠିଛି]

# ସପ୍ତଦଶ ଦୃଶ୍ୟ

ସ୍ଥାନ - ରୟାଲ ଡ୍ରଇଂରୁମ୍
କାଳ - ଦିବସ
ପାତ୍ର - ଦେଓ୍ୱାନ, ବିକ୍ରମ ।

[ରୟାଲ ଡ୍ରଇଂରୁମ୍ । ପୂର୍ବର ସେଇ ସାଜସଜା । ମଞ୍ଚରେ ନୀରବତା । ବାହାରୁ ଆସିଛନ୍ତି ବିକ୍ରମ । ସିଗାରେଟ୍ ଲଗାଇଛନ୍ତି । ପଦଚାଳନା କରିବା ଭିତରେ ଡାକିଛନ୍ତି...]

ବିକ୍ରମ - ଭାନୁ...ଭାନୁ... ! ରଙ୍କ...ରଙ୍କ... । କେହି ନାହାନ୍ତି ନା' କ'ଣ !

[ଭିତରୁ ଆସିଛନ୍ତି ଦେଓ୍ୱାନ । ନମସ୍କାର ସେ କରିଛନ୍ତି ବିକ୍ରମଙ୍କୁ ...]

ଦେଓ୍ୱାନ - ନମସ୍କାର ବିକ୍ରମବାବୁ । କେତେବେଳେ ଆସିଲେ ?

ବିକ୍ରମ - ଏଇ ସାଙ୍ଗେ ସାଙ୍ଗେ ତ ଆସୁଛି । ହଁ, ରଙ୍କ ନାହିଁ ବୋଧେ ?

ଦେଓ୍ୱାନ - ବଜାର ପଠେଇଛି ତାକୁ । ଆଜି ମଣିମାଙ୍କ ଜନମ ଦିନ । କିଛି ଗୋଟାଏ ନ ହେଲେ-

ବିକ୍ରମ - ଶୁଭ ଦିନରେ ମୁଁ ଆସି ପହଞ୍ଚିଛି । ଆଜି ତା'ହେଲେ ଆଖଡ଼ା ବେଶ୍ ଜମିଯିବ । ଆରେ, ଅହଲ୍ୟା ଅଛି, ନା' ଦିଲ୍ଲୀ ଗଲାଣି ?

ଦେଓ୍ୱାନ - 'ଅହଲ୍ୟା' !

ବିକ୍ରମ - ଏଠି ଯିଏ ରହୁଥିଲା । ଭାନୁ ତାକୁ ଡକେଇଥିଲା । ଭଲ ଝିଅଟିଏ । ତା'ପାଇଁ ଭାନୁର ସ୍ୱଭାବ ମଧ୍ୟ କିଛିଟା ବଦଳିଯାଇଛି ।

ଦେଓ୍ୱାନ - ସେ ଝିଅଙ୍କୁ ଆପଣ ଚିହ୍ନିପାରିବେ ? ମୁଁ ଫଟୋ ରଖିଛି । ଦେଖିଲେ...

[ପକେଟ ଉଣ୍ଡାଳିଛନ୍ତି । ପାଇ ନାହାନ୍ତି]

ଦେଓ୍ୱାନ - ଘରେ ଛାଡ଼ି ଦେଇ ଆସିଛି ।

ବିକ୍ରମ - ଦେଓ୍ୱାନ, ତମ କଥାରୁ ମୁଁ କିଛି ଧରିପାରୁନି ।

ଦେଓ୍ୱାନ - କୁମାର ଯେଉଁ ଝିଅକୁ ବିବାହ କରିଛନ୍ତି, ତା' ନାଁ ବି 'ଅହଲ୍ୟା'... ।

ବିକ୍ରମ - ସେ ଝିଅ ଏଠିକି କାହିଁକି ଆସିବ ? ତା'ପରେ ଜାଣିଶୁଣି କିଏ କାହିଁକି ମରଣ ଯନ୍ତା ଭିତରକୁ ପାଦ ବଢ଼ାଇବ ? ସେ ଡ୍ୟାନ୍ସର କଥା କହୁଛ ତ ?

ଦେଓ୍ୱାନ - ହଁ, ସେ ବା କାହିଁକି ଆସିବ ?

ବିକ୍ରମ - ଦେଓ୍ୱାନ, ଆରେ ଭାନୁକୁ ଡାକିଦିଅ । ଆଜି ଦିନଟା ମସ୍ତ ମସ୍ତରେ କଟିଯିବ ।

ଦେଓ୍ୱାନ - ଆପଣ କିଛି ଶୁଣି ନାହାନ୍ତି ବୋଧେ ?

ବିକ୍ରମ - ମାନେ ? କୋଉ କଥା ?

ଦେଓ୍ୱାନ - ତାଙ୍କୁ ପାରାଲିସିସ୍ ଆକ୍ରମଣ କରିଛି । ଖାଲି ସେତିକି ନୁହେଁ । ତାଙ୍କ ମସ୍ତିଷ୍କ ମଧ୍ୟ ଆଉ କାମ କରୁନି ।

ବିକ୍ରମ - ଏ ସବୁ- ?

ଦେଓ୍ୱାନ - ମଣିଷ ଦେଖିଲେ ଭୟ କରୁଛନ୍ତି । ଏ ଜାଗା ଆଦୌ ମାଡୁ ନାହାନ୍ତି । ଅନ୍ଧାରୀ ଘରର ପଲଙ୍କ ତଳେ ଜାକିଜୁକି ହୋଇ ଶୋଉଛନ୍ତି । ଗାଧୁଆ ପୂରାପୂରି ବନ୍ଦ । ଇଚ୍ଛା ହେଲେ ଖାଉଛନ୍ତି, ନଇଲେ ନାହିଁ । କାହାରି କଥା ଶୁଣୁ ନାହାନ୍ତି ।

ବିକ୍ରମ - ରଙ୍କ କଥା ବି-

ଦେଓ୍ୱାନ - ବଡ଼ କଷ୍ଟରେ ରଙ୍କ ଯାହା ଖୁଆଉଛି । ସେଇ ପଲଙ୍କ ତଳେ ଝାଡ଼ା ପରିସ୍ରା... । କେତେ କାଳ ଯେ ଏମିତି ଚାଲିବ... !

ବିକ୍ରମ - ଡାକ୍ତର ଦେଖେଇଥିଲ ?

ଦେଓ୍ୱାନ - ହଁ । ଡାକ୍ତରବାବୁ ମନା କରିଦେଲେ । କହିଲେ କିଛି ଲାଭ ହେବନି । ଏ ରୋଗରୁ ମୁକ୍ତି ମିଳିବା କଷ୍ଟ ।

ବିକ୍ରମ - ଠିକ୍ ଅଛି । ମୁଁ ତାକୁ ଚଣ୍ଡୀଗଡ଼ ନେଇଯିବି ।

ଦେଓ୍ୱାନ - ହଁ, ବିକ୍ରମବାବୁ । ସେଇଆ କରନ୍ତୁ । ବିଚରା ରଙ୍କଟା....

ବିକ୍ରମ - କୁମାର ଜାଣିଛି ?

ଦେଓ୍ୱାନ - ନା' ! ତାଙ୍କ ଠିକଣା ଆମ ପାଖରେ ନାହିଁ । ବୁଲୁକୁ କହିଛି । ସେ ଚେଷ୍ଟା କରୁଛି ।

ବିକ୍ରମ - କ'ଣ ଯେ ସବୁ ଘଟିଗଲା ! କୁମାର ପାଇଁ ଏ ସବୁ ।

ଦେଓ୍ୱାନ - ତାଙ୍କୁ ଦୋଷ ଦେଇ ଲାଭ ନାହିଁ । ରାଣୀମା'ଙ୍କ ଦେହାନ୍ତ ଖବର ଶୁଣିବା ପରଠାରୁ ଏ ସବୁର ଆରମ୍ଭ ।

ବିକ୍ରମ - କ'ଣ ହେଲା, ସୁଭଦ୍ରା- ! ଏସବୁ ହବନି କାହିଁକି ? ସୁଭଦ୍ରାର ଅଭିଶାପ ଫଳିଲା । ଭାନୁ ତା'ପ୍ରତି ବହୁତ ଅନ୍ୟାୟ କରିଛି । ନିଜର ଅହଂଭାବ ପାଇଁ ଗୋଟାଏ ରାଜପରିବାର ଧ୍ୱଂସ ହୋଇଗଲା ।

ଦେଓ୍ୱାନ - ସିଏ ତ ରାଜା । ତାଙ୍କୁ କିଏ ବୁଝାଇବ ?

ବିକ୍ରମ - ସବୁ ଭୁଲ୍ ଭାନୁର । ତାକୁ ବହୁତ ବୁଝେଇଛି । ସାଙ୍ଗ ହିସାବରେ ଆଉ କ'ଣଟା ବା କରିପାରିବି ?

ଦେଓ୍ୱାନ - ଆସିଛନ୍ତି ଯେତେବେଳେ, ଥରେ ନିଜ ଆଖିରେ ଦେଖିଯା'ନ୍ତୁ ।

[ଭିତର ଘରକୁ ପଶିଯାଇଛନ୍ତି ଦେଓ୍ୱାନ ଏବଂ ବିକ୍ରମ...]

# ଅଷ୍ଟାଦଶ ଦୃଶ୍ୟ

ସ୍ଥାନ - ରୟାଲ ଡ୍ରଇଂରୁମ୍
ସମୟ - ଗଭୀର ରାତି
ଚରିତ୍ର - ରାଜା

[ରୟାଲ ଡ୍ରଇଂରୁମ୍ । ପୂର୍ବର ପରିବେଶ ଅପରିବର୍ତ୍ତିତ । ଗଭୀର ରାତ୍ରିର ସୂଚନା । ମଞ୍ଚରେ ଝାପ୍ସା ଅନ୍ଧାର । ଆସିଛନ୍ତି ଧୀରେ ଧୀରେ ରାଜା ଭାନୁପ୍ରତାପ । ପାରାଲିସିସ୍ ରୋଗରେ ହାତଗୋଡ଼ କାମ କରୁନି । ପରିବେଶ ଗମ୍ଭୀର । ମଞ୍ଚର ପ୍ରତ୍ୟେକଟି ପଦାର୍ଥକୁ ଗଭୀର ଭାବେ ଏକ ଅନ୍ତରଙ୍ଗ ଦୃଷ୍ଟି ନେଇ ନିରୀକ୍ଷଣ କରିଛନ୍ତି ଭାନୁପ୍ରତାପ । ମଞ୍ଚର ପରିବେଶ କରୁଣାର୍ଦ୍ର... । ଟେବୁଲ ଉପରେ ରହିଛି ସୁଭଦ୍ରାଙ୍କର ଫଟୋଚିତ୍ର...]

୧. ରାଜା ଭାନୁପ୍ରତାପ ଧୀରେ ଧୀରେ ସିଂହାସନ ପାଖକୁ ଆଗେଇ ଯାଇଛନ୍ତି । କାମ କରୁଥିବା ହାତରେ ଆଉଁଶି ଦେଇଛନ୍ତି । ସିଂହାସନ ଭିତରୁ ଭାସିଆସିଛି କରୁଣ ରାଗିଣୀ ।

୨. ଏଥର ଭାନୁପ୍ରତାପ ଆଗେଇ ଯାଇଛନ୍ତି ନିଜର ପ୍ରିୟ ପରିଚିତ ବନ୍ଧୁକ ପାଖକୁ । ବନ୍ଧୁକଟିକୁ ହାତରେ ସ୍ପର୍ଶ କରିଛନ୍ତି । ବନ୍ଧୁକ ଭିତରୁ ଭାସିଆସିଛି ଆଳାପର ନହବତ୍ ।

୩. ରାଜା ଭାନୁପ୍ରତାପ ଧୀରେ ଧୀରେ ଆଗେଇଛନ୍ତି ଚାବୁକ ପାଖକୁ । କରୁଣ ଦୃଷ୍ଟିରେ ତାକୁ ଚାହିଁଛନ୍ତି । ସ୍ପର୍ଶ କରିଛନ୍ତି ସ୍ନେହରେ । ଚାବୁକ ଭିତରୁ ଆଳାପ ଧ୍ୱନି ଭାସି ଆସିଛି ।

୪. ଏଥର ରାଜା ଭାନୁପ୍ରତାପ ଆଗେଇ ଯାଇଛନ୍ତି ନିଜର ତରବାରି ପାଖକୁ, ଯାହା ଥିଲା ଏକଦା ତାଙ୍କର ସହଚର । ତରବାରିକୁ ଛୁଇଁଛନ୍ତି ଆବେଗରେ । ତା' ଭିତରୁ ପ୍ରତିଧ୍ୱନିତ ହୋଇଉଠିଛି କରୁଣ ଆଳାପ ।

୫. ରାଜା ଏଥର ଯାଇଛନ୍ତି ବଂଶୀ ପାଖକୁ । ଆଣିଛନ୍ତି ମୁହଁ ପାଖକୁ । ଚୁମ୍ବନ ଦେବାକୁ ଚେଷ୍ଟା କରିଛନ୍ତି । ବଂଶୀ ଭିତରୁ ଭାସିଆସିଛି କରୁଣ ବିଳାପ... ।

୬. ଭାନୁପ୍ରତାପ ଆଗେଇ ଯାଇଛନ୍ତି ଟେବୁଲ ଉପରେ ରହିଥିବା ରାଣୀ ସୁଭଦ୍ରାଙ୍କ ଫଟୋଚିତ୍ର ପାଖକୁ । ଅପଲକ ନୟନରେ ଚାହିଁ ରହିଛନ୍ତି । ଆଖିରୁ ଗଡ଼ିଆସିଛି ଦୁଇଧାର ଲୁହ ।

[ମଞ୍ଚରେ କରୁଣ ରାଗିଣୀ ପ୍ରସରି ଉଠିଛି । ବେତ୍ରାହତ ପରି ରାଜା ପୁଣି ବାହାରି ଯାଇଛନ୍ତି ଧୀରେ ଧୀରେ ମଞ୍ଚରୁ...]

# ଶେଷ ଦୃଶ୍ୟ

ସ୍ଥାନ - ଡ୍ରଇଂରୁମ୍
ସମୟ - ସକାଳ
ଚରିତ୍ର - ରାଜା, ଦେଓ୍ୱାନ, ବିକ୍ରମ, ବୁଲୁ, ରଙ୍କ, ଅହଲ୍ୟା, କୁମାର

[ରୟାଲ ଡ୍ରଇଂରୁମ୍ ଆଜି ଅଯତ୍ନ । ବିନ୍ୟସ୍ତ... ରାଜା ଭାନୁପ୍ରତାପଙ୍କ ମୃତ୍ୟୁରେ ସବୁ ଜିନିଷ ଭିତରୁ ଯେମିତି ଜୀବନ ଲିଭିଯାଇଛି । ନିଜର ସିଂହାସନ ଉପରେ ଚିରଦିନ ପାଇଁ ଶୋଇ ଯାଇଥିଲେ ରାଜା ଭାନୁପ୍ରତାପ । ରଙ୍କର କାନ୍ଦଣାର ସ୍ୱର ପରିବେଶକୁ ଭାବଗମ୍ଭୀର କରି ଗଢ଼ି ତୋଳୁଥିଲା । ପାଖରେ ଠିଆ ହୋଇଥିଲେ ଦେଓ୍ୱାନ, ବିକ୍ରମ । ସେମାନେ କୁମାରକୁ ଅପେକ୍ଷା କରିଥିଲେ । ବାହାରେ ଜନତାଙ୍କ କୋଳାହଳ ଶୁଭୁଥିଲା।]

ଦେଓ୍ୱାନ - କୁମାରବାବୁ ତ ଏ ଯାଏ ପହଞ୍ଚିଲେ ନାହିଁ । କ'ଣ କରିବା ?

ବିକ୍ରମ - ଟେଲିଗ୍ରାମ୍‌ର ଆଡ୍ରେସ୍ ଠିକ୍ ଥିଲା ତ ?

ଦେଓ୍ୱାନ - ହଁ । (pause) ବୁଲୁ ବି ଫୋନ୍‌ରେ ଜଣେଇ ଦେଇଛି । କୁମାରବାବୁଙ୍କ ସହିତ ସିଏ ମଧ୍ୟ କଥାବାର୍ତ୍ତା ହୋଇଛି ।

ବିକ୍ରମ - ଯାହା ହେଉ, ଶେଷ ମୁହୂର୍ତ୍ତରେ ଆଡ୍ରେସ୍‌ଟା ମିଳିଗଲା । ରକ୍ଷା ହୋଇଗଲା । ନଚେତ୍ କେତେ ଅସୁବିଧା ହୋଇଥାନ୍ତା । ଆଚ୍ଛା କୁମାର କେମିତି ଆସୁଛି ?

ଦେଓ୍ୱାନ - ଫ୍ଲାଇଟ୍‌ରେ ।

ବିକ୍ରମ - (ଘଣ୍ଟା ଦେଖି) ଟାଇମ୍ ତ ହୋଇଗଲାଣି ।

[ଭିତରକୁ ଆସିଛି ବୁଲୁ । ତା' ପାଖକୁ ଯାଇଛନ୍ତି ଦେଓ୍ୱାନ...]

ବୁଲୁ - କୁମାରବାବୁ ଏଇ ସାଙ୍ଗେ ସାଙ୍ଗେ ପହଞ୍ଚିଲେ । ଆମ ଗାଡ଼ି ଯାଇଛି ତାଙ୍କୁ ଆଣିବାପାଇଁ ।

ବିକ୍ରମ - ସେ ଏକା, ନା' ସାଥିରେ- ?

ବୁଲୁ - ଦୁଇଜଣଯାକ ଆସୁଛନ୍ତି ।

ଦେଓ୍ୱାନ - ରଙ୍କ, ଆରେ ବୋହୂଟା ପ୍ରଥମଥର ପାଇଁ ଘରକୁ ଆସୁଛି । ଘରଦ୍ୱାର ଟିକେ ସଜାଡ଼ି ଦେ ।

ରଙ୍କ - ମତେ କିଛି କୁହନ୍ତୁନି ଦେଓ୍ୱାନସାହେବ ।

ବିକ୍ରମ - ଆରେ ବସି କାନ୍ଦିଲେ କ'ଣ ମଣିମା ଫେରିଆସିବେ ?

ରଙ୍କ - କେମିତି ଯେ ମୁଁ ପିଲାଟାକୁ ମୁହଁ ଦେଖେଇବି !

[ବାହାରୁ ଭାସିଆସୁଥିଲା ସ୍ଲୋଗାନ୍]

ସ୍ଲୋଗାନ୍ - ''ରାଜା ସାହେବ ଅମର ରହେ'''...

''ରାଜା ଭାନୁପ୍ରତାପ କୋଟି ପ୍ରଣାମ''...

ବିକ୍ରମ - ବାହାରେ ଏଭଳି ଭିଡ଼ । କେମିତି ସମ୍ଭାଳିବା ?

ବୁଲୁ - କିଛି ଅସୁବିଧା ହେବନି । ପୋଲିସ୍ ଫୋର୍ସ ଯଥେଷ୍ଟ ଅଛନ୍ତି । ସେମାନେ ସବୁ ସମ୍ଭାଳିନେବେ ।

ଦେଓ୍ୱାନ - ପ୍ରୋସେସନ ଟାଇମ୍ ?

ବୁଲୁ - ଦଶଟା ଦଶ ।

ଦେଓ୍ୱାନ - ଲୋକେ ଚାହୁଁଥିଲେ, ମଣିମାଙ୍କୁ ଶେଷଥର ପାଇଁ ଏଇଠି ଦର୍ଶନ କରିବାପାଇଁ... ।

ବୁଲୁ - ଏଠି ଆପଣମାନେ କଣ୍ଟ୍ରୋଲ କରିପାରିବେନି । ବ୍ୟସ୍ତ କାହିଁକି । ପ୍ରୋସେସନରେ ଗଲାବେଳେ ସମସ୍ତେ ଦର୍ଶନ କରିବେ... । ତା'ପରେ ଟାଉନ୍‌ର ସବୁ ସ୍କୁଲ କଲେଜ ଆଜି ବନ୍ଦ... । ଭିଡ଼ ହେବ ।

[ବାହାରୁ କୋଳାହଳ ଶୁଭିଛି । କାନେଇଛନ୍ତି ସେହି ଦିଗକୁ ବୁଲୁ...]

ବୁଲୁ - ମୁଁ ଯାଉଛି । ବାହାର ପରିସ୍ଥିତି କ'ଣ ହେଲା । (ପ୍ରସ୍ଥାନ)

ଦେଓ୍ୱାନ - କୁମାରବାବୁ ଯେ କାହିଁକି ଏତେ ଡେରି କରୁଛନ୍ତି !

[ଭିତରକୁ ପଶିଆସିଛନ୍ତି କୁମାର-ଅହଲ୍ୟା । ଆଶ୍ଚର୍ଯ୍ୟ ହୋଇ ଅହଲ୍ୟାକୁ ଚାହିଁଛନ୍ତି ସମସ୍ତେ...]

କୁମାର - ବିକ୍ରମଚାଚା....

[ବିକ୍ରମ ସାନ୍ତ୍ୱନା ଦେଉଛନ୍ତି କୁମାରକୁ]

ବିକ୍ରମ - No...No...My boy ! ଜନ୍ମ ମୃତ୍ୟୁ ତ ଈଶ୍ୱରଙ୍କ ହାତରେ । କିଏ ବା ତାକୁ ରୋକିପାରିବ ?

କୁମାର - 'ରଙ୍କ'...

[ରଙ୍କ କଇଁ କଇଁ ହୋଇ କାନ୍ଦିଉଠିଛି]

କୁମାର - ମୁଁ ପରିଚୟ ଏ ଯାଏ କରେଇଦେଇନି । ଅହଲ୍ୟା ଆସ ।

ଦେଓ୍ୱାନ - ତାଙ୍କୁ ସମସ୍ତେ ଜାଣିଛନ୍ତି । ତାଙ୍କରି ପାଇଁ ତ ମଣିମା କିଛିଟା ବଦଳି ଯାଇଥିଲେ ।

ବିକ୍ରମ - ହେଲେ ଭାନୁଟା ଶେଷପର୍ଯ୍ୟନ୍ତ ନିଜ ବୋହୂଟାକୁ ଜାଣିପାରିଲାନି । କେତେ ଖୁସି ହୋଇଥାନ୍ତା ସେ ଜାଣିଥିଲେ !

ଅହଲ୍ୟା - ଅଙ୍କଲ, ଯାହାସବୁ ଘଟିଗଲା... ଏ ସମସ୍ତ ପାଇଁ ମୁଁ କେବଳ ଦାୟୀ ।

ବିକ୍ରମ - ନା'...ମା'... । ଯାହା ଯେତେବେଳେ ଘଟିବାର କଥା ନିଶ୍ଚୟ ଘଟିବ । ତାକୁ କିଏ ଅଟକାଇପାରିବ । ଆମେ ତ ନିମିତ୍ତ ମାତ୍ର !

କୁମାର - ମୁଁ ଯଦି ତାଙ୍କର ଅବାଧ ହୋଇ ନ ଥାନ୍ତି, ହୁଏତ ସେ ଆଉ କିଛିଦିନ...

ଦେଓ୍ୱାନ - ନା' କୁମାର...ନା'... । ସମୟ ଆମ ସମସ୍ତଙ୍କ ଆଗରେ । ବିଧାତାଙ୍କ ଇଚ୍ଛାକୁ କିଏ ଅମାନ୍ୟ କରିପାରିବ !

କୁମାର - ଏତେସବୁ ଘଟଣା ଘଟିଗଲା, ଅଥଚ-

ଦେଓ୍ୱାନ - ସମୟ ନ ଥିଲା ଜଣେଇବାକୁ । ବିଚରା ରଙ୍କଟା ଏକା କ'ଣ କରିଥାନ୍ତା !

ବିକ୍ରମ - ସିଏ ରଜା । ତାର ଗୋଟାଏ ସ୍ୱତନ୍ତ୍ର ଷ୍ଟାଇଲ ଅଛି । ସିଏ କାହା କଥାରେ ଥିଲା ଯେ ଶୁଣିଥାନ୍ତା !

କୁମାର - ଅଙ୍କଲ-

ବିକ୍ରମ - ତୁ ବ୍ୟସ୍ତ ହ'ନି । କ୍ରିମେସନର ସବୁ ବନ୍ଦୋବସ୍ତ ହୋଇସାରିଛି । ବୁଲୁବାବୁ ଯାହାହଉ ସବୁ କରିଦେଇଛନ୍ତି । ହଁ, ଦଶଟା ଦଶରେ ପ୍ରୋସେସନ ବାହାରିବ ।

[ଭିତରକୁ ଆସିଛି ବୁଲୁ]

ବୁଲୁ - ଧୀରେ ଧୀରେ ଲୋକସଂଖ୍ୟା ବଢୁଛି । ଆଉ ଲେଟ୍ କରନ୍ତୁନି । ସମ୍ଭାଳି ହେବନି ।

[ସମସ୍ତେ ଆଗେଇ ଯାଇଛନ୍ତି ସିଂହାସନ ପାଖକୁ]

ବିକ୍ରମ - ଶେଷରେ ତୁ ଜିତିଗଲୁରେ ଭାନୁ... ! ରାଜା ଥିଲୁ । ରାଜା ହୋଇ ବି ରହିଗଲୁ । ଆମେ ସମସ୍ତେ ହାରିଗଲୁ । ଶେଷଥର ପାଇଁ ମୁଁ ତୋତେ ସାଲ୍ୟୁଟ କରୁଛି । "I salute my dear friend ! I salute my dear king !"

[ସାଲ୍ୟୁଟ କରିଛନ୍ତି ବିକ୍ରମ । ଅନ୍ତରାଳରୁ ଭାସିଆସିଛି ''ବଇଷ୍ଣବ ଜନତୋ ତେନ କହିଯେ...'' ଭଜନର କେଇପଦ... ।]

---

# ବିଶ୍ୱ ନାଟ୍ୟଦିବସ ପାଳିତ

## *'ଅପରାହ୍ନର ଅବଶୋଷ' ମଞ୍ଚସ୍ଥ*

ଭୁବନେଶ୍ୱର, ୨୭.୩.(ବ୍ୟୁରୋ)- ପ୍ରାଚୁର୍ଯ୍ୟ ଓ ସୌଖୀନ ଭିତରେ ବଞ୍ଚିଥିବା ମଣିଷ ବେଳେବେଳେ ପରାକ୍ରମ ହରାଇବସେ । ସମୟ ତାକୁ ଅସହାୟ କରିଦିଏ । ଶେଷ ଜୀବନ କେବଳ ଅବଶୋଷ ଭିତରେ ବିତେ । ଜୀବନର ଏହି ନିଛକ ସତ୍ୟ ପ୍ରତିଫଳିତ ହୋଇଛି ନାଟକ 'ଅପରାହ୍ନର ଅବଶୋଷରେ' । ଡକ୍ଟର ନାରାୟଣ ସାହୁଙ୍କ ମୂଳରଚନା ଏବଂ ମିହିର ମେହେରଙ୍କ ନିର୍ଦ୍ଦେଶନାରେ ସଜ୍ଜିତ ଏହି ନାଟକ ନାଟ୍ୟସଂସ୍ଥା 'ଇଣ୍ଟରନ୍ୟାସନାଲ ଥିଏଟର' ପକ୍ଷରୁ ସ୍ଥାନୀୟ ରବୀନ୍ଦ୍ରମଣ୍ଡପଠାରେ ମଞ୍ଚସ୍ଥ ହୋଇଯାଇଛି । ରାଜତନ୍ତ୍ର ଲୋପ ପାଇବା ପରେ ରାଜା ହାତରୁ ଶାସନର ଡୋରି କାଢ଼ିନିଆଯିବା ପରେ ଶାସକର ଗର୍ବ ଓ ଦମ୍ଭ କେମିତି ଅପସରିଯାଏ ତାହା ସଂପୃକ୍ତ ନାଟକରେ ସ୍ଥାନ ପାଇଛି । କ୍ଷମତା ହରାଇବା ପରେ ନିଃସଙ୍ଗ ହୋଇପଡ଼ିବା, ପରିସ୍ଥିତିର ତାଡ଼ନାରେ ଦାରିଦ୍ର୍ୟ ଭିତରେ ସଢ଼ିବା ଏବଂ ଶେଷରେ ଭିକ୍ଷାବୃତ୍ତି ପାଇଁ ବାଧ୍ୟ ହେବା ଭଳି ଘଟଣାର ଶିକାର ହୋଇ ଜଣେ ରାଜାର ଶେଷ ଜୀବନ କିପରି ହା ହୁତାଶ ଏବଂ ଅବଶୋଷ ଭିତରେ କଟିଛି ତାହାହିଁ ଅପରାହ୍ନର ଅବଶୋଷ ନାଟକର କଥାବସ୍ତୁ ।

ଆଜି ମଞ୍ଚସ୍ଥ ହୋଇଥିବା ଏହି ନାଟକର ବିଭିନ୍ନ ଭୂମିକାରେ ଡି.ରାଉତରାୟ, କେ. ରଥ, ବି. ତ୍ରିପାଠୀ, ଏସ. ପ୍ରଧାନ, ଏସ. ମହାନ୍ତି, ଏ. ମଲ୍ଲିକ, ମନୁ, ଛବି ଏବଂ ମମତା ପ୍ରମୁଖ କଳାକାରମାନେ ଅଭିନୟ କରିଥିଲେ । ନାଟକରେ ସଙ୍ଗୀତ ନିର୍ଦ୍ଦେଶନା ଦେଇଥିଲେ ମଣ୍ଟୁ ମହାନ୍ତି । ବିଶ୍ୱ ନାଟ୍ୟଦିବସ ପାଳନ ପରିପ୍ରେକ୍ଷୀରେ ଆଜିର ଏହି ସାଂସ୍କୃତିକ କାର୍ଯ୍ୟକ୍ରମକୁ ଉଦ୍‌ଘାଟନ କରିଥିଲେ ରାଜ୍ୟପାଳ ଏମ୍.ଏମ୍. ରାଜେନ୍ଦ୍ରନ୍ । ଅବସରପ୍ରାପ୍ତ ଆଇ.ଏ.ଏସ. ଅଫିସର ଏ.ଏନ. ତିୱାରୀଙ୍କ ଅଧକ୍ଷତାରେ ଅନୁଷ୍ଠିତ ଏହି ଉତ୍ସବରେ ସଂସ୍କୃତି ନିର୍ଦ୍ଦେଶକ ନରେନ୍ଦ୍ର କୁମାର ମିଶ୍ର ପ୍ରମୁଖ ଯୋଗ ଦେଇଥିଲେ । ଇଣ୍ଟରନ୍ୟାସନାଲ ଥିଏଟର ପକ୍ଷରୁ ଆୟୋଜିତ ଏହି ଉତ୍ସବରେ ପ୍ରଖ୍ୟାତ ନାଟକ ଓ ଚଳଚ୍ଚିତ୍ର ଅଭିନେତ୍ରୀ ମଣିମାଳା ଦେବୀଙ୍କୁ ମାନପତ୍ର ପ୍ରଦାନ ସହ ସମ୍ବର୍ଦ୍ଧନା ଦିଆଯାଇଥିଲା ।

(ଧରିତ୍ରୀ- ୨୯.୩.୨୦୦୧)

## WORLD THEATRE DAY

International Theatre celebrated the World Theatre Day on March 27, 2001 at Rabindra Mandap, Bhubaneswar by staging a play 'Aparahnara Abasosha'. Directed by Mihir Meher, the play focussed on the character of Raja Bhanupratap. Bhanupratap is a king in name only as after independence the government has taken over and even the privy purse is withdrawn. But he is yet to wake up to the reality; he is stuck in the past and behaves like a king with all the accouterments of power only to be battered by reality again and again.

His personal life is in a mess too with his wife leaving him because of his involvement with another woman and his son growing up to be independent-minded and refusing to toe his line.

Finally the death of Bhanupratap stands as a symbol of the death of monarchy. The old order changeth giving place to new. Biren Routray does an excellent job as Raja Bhanupratap and he is ably supported by others like Kashi Ratha, B. Tripathy etc. However the play written by Narayan Sahu lacks pace and even the stage designing and sets could be faulted on the count of redundancy. Mantu Mohanty's music fitted the bill and on the whole. Aparahnara Abasosha managed to create an ambience of the past for the audience to savour and revel in.

(Indian Express, 30.3.2001)

## THE SUDDENED TWILIGHT

**[ Aparahnara Abashosh ]**

After the Indian Independence, the system of monarchy has totally been eliminated. The rulers have lost their power and positions granted by the British rulers. Even the Privy-purses assured to them by the Indian Government has also been suspended since 1972. Under the pressure of wheels of the present constitutional system the old rulers have almost been crushed. They are reduced to any common and ordinary subject of the country. This is really a pitiful drama, left behind the screen. But nobody minds to eye upon this pathetic life.

This poetic theatrical work tries to potray the sad story of an ex-ruler, Bhanupratap, who is almost lost, damaged and punished. He has lost his throne, his riches, power and everything. But the echo of his ancestral blue blood tortures him with-in.

The painful cries of a banyan tree being squeezed to a Bonsai is echoed in the poverty-striker and Broken-hearted Bhanupratap in every inch of his life.

Upon this dark-sure of Bhanupratap, his wife has left the poor and useless. The son has gone way ward. But old Bhanupratap lies on the colourless broken palace of the ancestors and broad into the sweet slumbers of the past, with his lone companion i.e. his old servant, "Ranka" who has nothing but his conscience of faithfulness.

At the out-set of the present social and political arena, the drama depicts this touching but neglected aspect our Democratic Peoples' Republic.

(Prof. Sitakant Mohanty 30.3.2001)

# ନୂଆବର୍ଷର ପ୍ରଥମ ଟେଲିନାଟକ

## 'ଅପରାହ୍ଣର ଅବଶୋଷ'

ନୂଆବର୍ଷକୁ ସ୍ୱାଗତ ଜଣାଇ ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ରରୁ ପ୍ରଥମ ଓଡ଼ିଆ ଟେଲିନାଟକ ଭାବେ ପ୍ରସାରିତ ହେଉଛି 'ଅପରାହ୍ନର ଅବଶୋଷ', ଜାନୁଆରୀ ୬ ତାରିଖ ଗୁରୁବାର ପ୍ରସାରିତ ହେଉଥିବା ଏହି ନାଟକର ପ୍ରସାରଣ ସମୟ ସୀମା ରହିଛି ୧ ଘଣ୍ଟା । ଡଃ ନାରାୟଣ ସାହୁଙ୍କ ରଚିତ ଏହି ନାଟକର ପ୍ରଯୋଜକ, ନିର୍ଦ୍ଦେଶକ ମିହିର ମେହେର୍ । ସଙ୍ଗୀତ ନିର୍ଦ୍ଦେଶନା ଦେଇଛନ୍ତି ସତ୍ୟନାରାୟଣ ପରିଡ଼ା ଓ ଅରୁଣ ସେଠ୍ । ସମ୍ବଲପୁରର ଖ୍ୟାତିସମ୍ପନ୍ନ ସଙ୍ଗୀତଜ୍ଞ ଅରୁଣଙ୍କ ବିରଳ ବାଦ୍ୟସମ୍ଭାର 'ଦିଲ୍‌ରୁବା'ର ବ୍ୟବହାର ଏଥିରେ କରାଯାଇଛି ।

ଗତ ନଭେମ୍ବର ୨୧ ଓ ୨୨ ଦୁଇଦିନ ଧରି ଦୂରଦର୍ଶନ ଷ୍ଟୁଡିଓରେ ନାଟକଟିର ସୁଟିଂ କରାଯାଇଥିଲା । ୫ ଜଣ କ୍ୟାମେରାମ୍ୟାନ୍ ଭେଲୁମଣି, ରଞ୍ଜିତ୍ ସେଠୀ, ବିଜୟ ପରିଡ଼ା, ଦେବାଶିଷ ପଟ୍ଟନାୟକ ଓ ଅଜୟ ସିଂହ ଏହି ଧାରାବାହିକର କ୍ୟାମେରା ପରିଚାଳନା କରିଥିବାବେଳେ ସ୍ୱତନ୍ତ୍ର ଧରଣର ନୃତ୍ୟ ନିର୍ଦ୍ଦେଶନା ଦେଇଛନ୍ତି ହିମାଂଶୁ ଶେଖର ନାୟକ ଓ ବିଜୟଲକ୍ଷ୍ମୀ ସେନାପତି । ସମ୍ପାଦନା କରିଛନ୍ତି ନିର୍ଦ୍ଦେଶକ ମିହିର ମେହେର ନିଜେ । ମଞ୍ଚ ପରିଚାଳନା କରିଛନ୍ତି ଦିଲୀପ ସାହୁ, ସହକାରୀ ନିର୍ଦ୍ଦେଶକ ଅଛନ୍ତି ପ୍ରଶାନ୍ତ ପାଇକରାୟ । ନାଟକର ବିଭିନ୍ନ ଭୂମିକାରେ ବୀରେନ୍ ରାଉତରାୟ, କାଶୀନାଥ ରଥ, ପରାଗ ପଟ୍ଟନାୟକ, ବିରାଜ ଦାଶ, ନଟବର ସେଣ, ଶଙ୍କର ବସୁ ମଲ୍ଲିକ, ମମତା ମହାନ୍ତି, ଈଶା ବେବର୍ତ୍ତା, ମଣିମେଖଳା ମହାନ୍ତି ଓ ବିଶେଷ ଭୂମିକାରେ ମଣିମାଳା ଦେବୀ ଅଭିନୟ କରିଛନ୍ତି ।

ଚରମ ଦାରିଦ୍ର୍ୟ ସତ୍ତ୍ୱେ ନିଜ ସ୍ୱାଭିମାନକୁ ନେଇ ବଞ୍ଚି ରହିଥିବା ଜଣେ ରାଜାଙ୍କ କାହାଣୀକୁ ନେଇ 'ଅପରାହ୍ନର ଅବଶୋଷ' ଗଢିଉଠିଛି । କାହିଁ କେତେଦିନୁ ରାଜାରାଜୁଡ଼ା ଯୁଗର ଅବସାନ ହୋଇଥିବା ସତ୍ତ୍ୱେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ନାୟକ ନିଜକୁ ରାଜା ବୋଲି ଭାବୁଛି । ଅତୀତରେ ସବୁବେଳେ ପାଇପ୍ ଟାଣିବାର ଅଭ୍ୟାସ ଥିବା ଲୋକଟି ଏବେ ଚୁରୁଟ୍ ଦେଇ ବିଡ଼ି ଟାଣୁଛି । ଘରେ ଖାଇବାକୁ କିଛି

ନ ଥାଉ ପଛକେ, ହାଣ୍ଡି ମାଙ୍କଡ଼ଚିହ୍ନ ମାରୁଥିଲେ ହେଁ ସେ ନିଜର ସମ୍ମାନ, ଅଭିମାନକୁ ଛାଡ଼ିପାରି ନାହିଁ ।

ଲେଖକ ନାରାୟଣ ସାହୁ ଓ ପ୍ରଯୋଜକ ମିହିର ମେହେରଙ୍କ ଯୋଡ଼ି ଟେଲିନାଟକ 'ପ୍ରଶ୍ନ'ର ଦୀର୍ଘ ୧୩ ବର୍ଷ ପରେ ପୁଣିଥରେ ଏହି 'ଅପରାହ୍ନର ଅବଶୋଷ'ରେ ସ୍ୱତନ୍ତ୍ର ରୁଚି ନେଇ ଆବିର୍ଭୂତ ହେଉଥିବାରୁ ଦର୍ଶକମାନଙ୍କ ମନରେ ଏହାକୁ ନେଇ ଉତ୍କଣ୍ଠା ରହିବ ।

(ଶତାବ୍ଦୀ- ୧୫.୧.୨୦୦୦)

## 'ଶାଶ୍ୱତୀ'ର ନାଟକ ପ୍ରତିଯୋଗିତାରେ

### ଡଃ ନାରାୟଣ ସାହୁଙ୍କ ନାଟକ 'ଅସ୍ତରାଗ'

ରାଜା ଭାନୁପ୍ରତାପଙ୍କ ରାଜଗାଦି ଚାଲିଯିବାର ୩୦ ବର୍ଷ ପରେ ମଧ ତାଙ୍କ ନିଜ ଭିତରର ରାଜ ଅହମିକାକୁ ସେ ଭୁଲି ପାରି ନାହାନ୍ତି । ଯାହା ଫଳରେ ସେ ସମସ୍ତଙ୍କୁ ନିର୍ଦ୍ଦେଶ ଦେଇ କାର୍ଯ୍ୟ ହାସଲ କରିବାପାଇଁ ବୃଥା ଚେଷ୍ଟା କରିଛନ୍ତି । ରାଜା ଭାନୁପ୍ରତାପଙ୍କ ନିର୍ଦ୍ଦେଶକୁ ପୂଜାରୀ, ଚାକରମାନେ ମାନିବାକୁ ପ୍ରସ୍ତୁତ ନାହାନ୍ତି । ଏକମାତ୍ର ବୁଢ଼ା ଚାକର ରାଜା ଭାନୁପ୍ରତାପଙ୍କ ନିର୍ଦ୍ଦେଶକୁ ପାଳନ କରେ । ଶେଷରେ ରାଜା ନିଜ ଗର୍ବକୁ ବୁଝିପାରି ନିଜକୁ ସଜାଡ଼ିବାକୁ ଲାଗି ପଡ଼ିଛନ୍ତି । ଏହା ଥିଲା ଶାଶ୍ୱତୀର ୭ମ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ଅଭିନୀତ ନାଟକ 'ଅସ୍ତରାଗ'ର ସଂକ୍ଷିପ୍ତ କଥାବସ୍ତୁ ।

'ଅସ୍ତରାଗ' ୨୦୦୦ ମସିହା ଡିସେମ୍ବର ୩୦ ତାରିଖ ସନ୍ଧ୍ୟାରେ ବ୍ରହ୍ମପୁରଟାଉନ୍ ହଲ୍‌ଠାରେ ଅନୁଷ୍ଠିତ ହୋଇଥିଲା । ନାଟକଟିକୁ ରଚନା କରିଥିଲେ ବିଶିଷ୍ଟ ନାଟ୍ୟକାର ପ୍ରାଧ୍ୟାପକ ଡଃ ନାରାୟଣ ସାହୁ ଏବଂ ନିର୍ଦ୍ଦେଶନା ଦେଇଥିଲେ ଯୁବନିର୍ଦ୍ଦେଶକ ସାର୍ଥକ ସାରଥୀ ସାମନ୍ତରାୟ । ଏହାର ସଙ୍ଗୀତ ନିର୍ଦ୍ଦେଶକ ଥିଲେ ମଞ୍ଜୁ ମହାନ୍ତି । ନାଟକଟିର କାହାଣୀ ଓ ସଂଳାପ ଥିଲା ଉଚ୍ଚକୋଟୀର । ଉଚ୍ଚକୋଟୀର କାହାଣୀ, ପାତ୍ରଚିତ୍ର ସଂଳାପ, ବଳିଷ୍ଠ ସଙ୍ଗୀତ ତଥା ସର୍ବୋପରି ଉନ୍ନତ ନାଟ୍ୟ ପରିବେଷଣ ଯୋଗୁଁ ନାଟକ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ମଞ୍ଚନାଟକଗୁଡ଼ିକ ମଧ୍ୟରେ ଅନ୍ୟତମର ଆସନ ଦାବି କରିବା ନିଶ୍ଚିତ । ଭୁବନେଶ୍ୱରର 'କଳା କଳ୍ପନା' ନାଟ୍ୟାନୁଷ୍ଠାନ ତରଫରୁ ଏହାକୁ ପରିବେଷଣ କରାଯାଇଥିଲା ।

ନାଟକଟିର ବିଭିନ୍ନ ଭୂମିକାରେ ଅଂଶଗ୍ରହଣ କରିଥିଲେ ରବୀନ୍ଦ୍ର ନାୟକ, ମନୋଜ କୁମାର ସାମନ୍ତରାୟ, ଚିତ୍ତରଞ୍ଜନ ପଟ୍ଟନାୟକ, ଗିରିଜା, ଶରତ କୁମାର ମିଶ୍ର, ଉପେନ୍ଦ୍ର ମଲ୍ଲିକ୍, ସାର୍ଥକ ସାରଥୀ ପ୍ରଭୃତି ।

(ମାତୃଭାଷା- ୧୪.୧.୨୦୦୧)

# THE SUDDENED TWILIGHT

**[ Aparahnara Abashosh ]**

After the Indian Independence, the system of monarchy has totally been eliminated. The rulers have lost their power and positions granted by the British rulers. Even the Privy-purses assured to them by the Indian Government has also been suspended since 1972. Under the pressure of wheels of the present constitutional system the old rulers have almost been crushed. They are reduced to any common and ordinary subject of the country. This is really a pitiful drama, left behind the screen. But nobody minds to eye upon this pathetic life.

This poetic theatrical work tries to potray the sad story of an ex-ruler, Bhanupratap, who is almost lost, damaged and punished. He has lost his throne, his riches, power and everything. But the echo of his ancestral blue blood tortures him with-in.

The painful cries of a banyan tree being squeezed to a Bonsai is echoed in the poverty-striker and Broken-hearted Bhanupratap in every inch of his life.

Upon this dark-sure of Bhanupratap, his wife has left the poor and useless. The son has gone way ward. But old Bhanupratap lies on the colourless broken palace of the ancestors and broad into the sweet slumbers of the past, with his lone companion i.e. his old servant, "Ranka" who has nothing but his conscience of faithfulness.

At the out-set of the present social and political arena, the drama depicts this touching but neglected-aspect our Democratic Peoples' Republic.

(Prof. Sitakant Mohanty 30.3.2001)

## ନୂଆବର୍ଷର ପ୍ରଥମ ଟେଲିନାଟକ

### 'ଅପରାହ୍ଣର ଅବଶୋଷ'

ନୂଆବର୍ଷକୁ ସ୍ୱାଗତ ଜଣାଇ ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ରରୁ ପ୍ରଥମ ଓଡ଼ିଆ ଟେଲିନାଟକ ଭାବେ ପ୍ରସାରିତ ହେଉଛି 'ଅପରାହ୍ନର ଅବଶୋଷ', ଜାନୁଆରୀ ୬ ତାରିଖ ଗୁରୁବାର ପ୍ରସାରିତ ହେଉଥିବା ଏହି ନାଟକର ପ୍ରସାରଣ ସମୟ ସୀମା ରହିଛି ୧ ଘଣ୍ଟା । ଡଃ ନାରାୟଣ ସାହୁଙ୍କ ରଚିତ ଏହି ନାଟକର ପ୍ରଯୋଜକ, ନିର୍ଦ୍ଦେଶକ ମିହିର ମେହେର୍ । ସଙ୍ଗୀତ ନିର୍ଦ୍ଦେଶନା ଦେଇଛନ୍ତି ସତ୍ୟନାରାୟଣ ପରିଜା ଓ ଅରୁଣ ସେଠ୍ । ସମ୍ବଲପୁରର ଖ୍ୟାତିସମ୍ପନ୍ନ ସଙ୍ଗୀତଜ୍ଞ ଅରୁଣଙ୍କ ବିରଳ ବାଦ୍ୟସମ୍ଭାର 'ଦିଲ୍‌ରୁବା'ର ବ୍ୟବହାର ଏଥିରେ କରାଯାଇଛି ।

ଗତ ନଭେମ୍ବର ୨୧ ଓ ୨୨ ଦୁଇଦିନ ଧରି ଦୂରଦର୍ଶନ ଷ୍ଟୁଡିଓରେ ନାଟକଟିର ସୁଟିଂ କରାଯାଇଥିଲା । ୫ ଜଣ କ୍ୟାମେରାମ୍ୟାନ୍ ଭେଲୁମଣି, ରଞ୍ଜିତ୍ ସେଠୀ, ବିଜୟ ପରିଜା, ଦେବାଶିଷ ପଟ୍ଟନାୟକ ଓ ଅଜୟ ସିଂହ ଏହି ଧାରାବାହିକର କ୍ୟାମେରା ପରିଚାଳନା କରିଥିବାବେଳେ ସ୍ୱତନ୍ତ୍ର ଧରଣର ନୃତ୍ୟ ନିର୍ଦ୍ଦେଶନା ଦେଇଛନ୍ତି ହିମାଂଶୁ ଶେଖର ନାୟକ ଓ ବିଜୟଲକ୍ଷ୍ମୀ ସେନାପତି । ସମ୍ପାଦନା କରିଛନ୍ତି ନିର୍ଦ୍ଦେଶକ ମିହିର ମେହେର ନିଜେ । ମଞ୍ଚ ପରିଚାଳନା କରିଛନ୍ତି ଦିଲୀପ ସାହୁ, ସହକାରୀ ନିର୍ଦ୍ଦେଶକ ଅଛନ୍ତି ପ୍ରଶାନ୍ତ ପାଇକରାୟ । ନାଟକର ବିଭିନ୍ନ ଭୂମିକାରେ ବୀରେନ୍ ରାଉତରାୟ, କାଶୀନାଥ ରଥ, ପରାଗ ପଟ୍ଟନାୟକ, ବିରାଜ ଦାଶ, ନଟବର ସେଣ, ଶଙ୍କର ବସୁ ମଲ୍ଲିକ, ମମତା ମହାନ୍ତି, ଈଶା ବେବର୍ତ୍ତା, ମଣିମେଖଳ ମହାନ୍ତି ଓ ବିଶେଷ ଭୂମିକାରେ ମଣିମାଳା ଦେବୀ ଅଭିନୟ କରିଛନ୍ତି ।

ଚରମ ଦାରିଦ୍ର୍ୟ ସତ୍ତ୍ୱେ ନିଜ ସ୍ୱାଭିମାନକୁ ନେଇ ବଞ୍ଚି ରହିଥିବା ଜଣେ ରାଜାଙ୍କ କାହାଣୀକୁ ନେଇ 'ଅପରାହ୍ନର ଅବଶୋଷ' ଗତିଶୀଳ । କାହିଁ କେତେଦିନୁ ରାଜାରାଜୁଡ଼ା ଯୁଗର ଅବସାନ ହୋଇଥିବା ସତ୍ତ୍ୱେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ନାୟକ ନିଜକୁ ରାଜା ବୋଲି ଭାବୁଛି । ଅତୀତରେ ସବୁବେଳେ ପାଇପ୍ ଟାଣିବାର ଅଭ୍ୟାସ ଥିବା ଲୋକଟି ଏବେ ଚୁରୁଟ୍ ଦେଇ ବିଡ଼ି ଟାଣୁଛି । ଘରେ ଖାଇବାକୁ କିଛି

## କଳା କଳ୍ପନାର ନାଟକ 'ଅସ୍ତରାଗ'

ନାଟ୍ୟାନୁଷ୍ଠାନ 'ଶାଶ୍ୱତୀ' ଆନୁକୂଲ୍ୟରେ ରାଜ୍ୟସ୍ତରୀୟ ୭ମ ନାଟକ ପ୍ରତିଯୋଗିତା ବ୍ରହ୍ମପୁର ଟାଉନହଲଠାରେ ଅନୁଷ୍ଠିତ ହୋଇଯାଇଛି ।

ଏହି ନାଟକ ଉତ୍ସବର ଡିସେମ୍ବର ୩୦ ତାରିଖ ସନ୍ଧ୍ୟାରେ ଭୁବନେଶ୍ୱରର ସୌଖୀନ ନାଟ୍ୟାନୁଷ୍ଠାନ 'କଳାକଳ୍ପନା' ପକ୍ଷରୁ ନାରାୟଣ ସାହୁଙ୍କ ରଚିତ ନାଟକ 'ଅସ୍ତରାଗ' ପରିବେଷଣ କରାଯାଇଥିଲା । ଯୁବନିର୍ଦ୍ଦେଶକ ସାର୍ଥକ ସାମନ୍ତରାଙ୍କ ବଳିଷ୍ଠ ନିର୍ଦ୍ଦେଶନା ଏବଂ ମଣ୍ଟୁ ମହାନ୍ତିଙ୍କ ଉଚ୍ଚକୋଟୀର ସଂଗୀତ ନିର୍ଦ୍ଦେଶନାରେ ନାଟକଟି ସରସ ସୁନ୍ଦର ହୋଇପାରିଥିଲା । ନାଟକଟିର ସଂକ୍ଷିପ୍ତ କାହାଣୀ ଥିଲା ଏହିପରି, ରାଜା ଭାନୁପ୍ରତାପଙ୍କ ରାଜଗାଦି ଚାଲିଯାଇଛି । ତିରିଶ ବର୍ଷ ପରେ ମଧ ନିଜ ଭିତର ରାଜ ଅହମିକାକୁ ପାସୋରି ପାରି ନାହାନ୍ତି ଭାନୁପ୍ରତାପ । ଫଳରେ ସେ ସମସ୍ତଙ୍କୁ ଆଦେଶ, ନିର୍ଦ୍ଦେଶ ଦେଇ କାର୍ଯ୍ୟ ହାସଲ କରିବାପାଇଁ ଚେଷ୍ଟା କରିଛନ୍ତି । ତାଙ୍କର ଏ ସମସ୍ତ ଚେଷ୍ଟା ବିଫଳ ହୋଇଛି । ଏକମାତ୍ର ବୁଢ଼ା ଚାକର ଭାନୁପ୍ରତାପଙ୍କ ଆଦେଶକୁ ପାଳନ କରେ । ଶେଷରେ ରାଜା ନିଜର ଅହଂକୁ ବୁଝିପାରି ନିଜକୁ ସଜାଡ଼ିବାରେ ଲାଗିଛନ୍ତି ।

ନାଟକଟିର ବିଭିନ୍ନ ଭୂମିକାରେ ଅଂଶ ଗ୍ରହଣ କରି**ଥିଲେ-** ରବୀନ୍ଦ୍ର ନାୟକ (ରାଜା), ମନୋଜ କୁମାର ସାମନ୍ତରାୟ (ଦେଓ୍ୱାନ) **ଚିତ୍ତରଞ୍ଜନ ପଟ୍ଟନାୟକ,** (ରଙ୍କ), ଶରତ କୁମାର ମିଶ୍ର (ବିକମ), ଗିରିଜା (ରାଜକୁ**ମାରୀ), ସାର୍ଥକ ସାରଥୀ** (ଫଟୋଗ୍ରାଫର) ଓ ଉପେନ୍ଦ୍ର ମଲ୍ଲିକ (କଲେକ୍ଟର) ।

(ପ୍ରଜାତନ୍ତ୍ର- ୧୪.୧.୨୦୦୧)

# କଥାରେ କଥାରେ

ଘଟଣାଟି ଏମିତି.... ଜଣେ ରାଜା ଥିଲେ, କିନ୍ତୁ ତାଙ୍କର ନା ଥିଲା ରାଜ୍ୟ ନା ଥିଲା ରାଜତ୍ୱ । ସାମ୍ରାଜ୍ୟ ବିସ୍ତାରର ଅବକାଶ ନ ଥିଲା; ଅଥଚ ନିଜର ଅହଂକାରକୁ ଅନ୍ୟ ଉପରେ ଲଦି ଦେବାର ପ୍ରବଣତା କମି ନ ଥିଲା । ଜୀର୍ଣ୍ଣ ରାଜପ୍ରାସାଦ, ଭଗ୍ନ ସିଂହାସନ, କଳଙ୍କିଲଗା କରବାଳ, ପୁରୁଣା ବନ୍ଧୁକ ଓ ଛିଣ୍ଡା ଚାବୁକ କେବଳ ରହିଯାଇଥିବା ମିଥ୍ୟା ଆଭିଜାତ୍ୟ ଓ ଅଭିମାନର ପ୍ରତୀକ ହୋଇ । ସମୟର ଗତିରୋଧ କରି ସମୟାତୀତ ହେବାର ଅଭିଳାଷୀ ରାଜା ତଥାପି ବି ନିସ୍ପୃହ ରହିଯାଇଥିଲେ ସମୟର ପରିବର୍ତ୍ତିତ ସ୍ୱରପ୍ରତି । ରାଜତନ୍ତ୍ରର ବିଲୋପ ସତ୍ତ୍ୱେ ରାଜାଙ୍କର ମାନସିକତାରେ, ରକ୍ତରେ ସେହି ପରମ୍ପରାର ଭୂତ । ବିଲାତୀ ଛାଡ଼ି ଭାଙ୍ଗ, ସିଗାରେଟରୁ ପିକା ପୁଣି ବିଡ଼ି, ନାଲି ଚା'- ତଥାପି ଅହଂକାରର ଶେଷ ନାହିଁ । ସେହି ଅନ୍ଧ ମାନସିକତାର ଅନ୍ୟ ଏକ ଭୁଲ ଗଙ୍ଗା ଓ ଭୀଷ୍ମ । ପରିଣତିରେ ପତ୍ନୀ ସୁଭଦ୍ରାଙ୍କ ଗୃହତ୍ୟାଗ, ପୁତ୍ର କୁମାରର ପ୍ରତିକ୍ରିୟାଶୀଳ ମନୋଭାବ ।

ତଥାପି ସେ ରାଜା । ରାଜା କେବେ କି ଭୁଲ୍ କରେ (?) । ପ୍ରିଭିପର୍ସର ଉଚ୍ଛେଦ ପରେ ସାମାନ୍ୟ ଦାନ ଉପରେ ନିର୍ଭରଶୀଳ, ଅଥଚ ସ୍ୱୀକୃତି କୁଣ୍ଠିତ ନାମକୁ ମାତ୍ର 'ଭାନୁପ୍ରତାପ' ତଥାପି ଆଦେଶ ଦେଇପାରନ୍ତି' (!!) ପ୍ରଜା ନ ଥାଇବି ରାଜା । ବୟସର ଅପରାହ୍ଣରେ ମିଥ୍ୟା ଅଭିମାନକୁ ନେଇ ବଞ୍ଚୁଥିବା ବିଚରା ଖିଆଲୀ ରାଜାର ଅବଶୋଷ- କେତେ କରୁଣ, ମର୍ମନ୍ତୁଦ । ବିଡ଼ମ୍ବିତ ସମୟ ଓ ଅସହାୟତାର ଶେଷ ପ୍ରତିଧ୍ୱନି ରାଜା ଭାନୁପ୍ରତାପ, ଶେଷହୀନ କରୁଣ ରାଗିଣୀର ଅବଶିଷ୍ଟ ମୂର୍ଚ୍ଛନାଟିଏ ।

× × × ×

ଉତ୍ତର ଅଶୀ ଓଡ଼ିଆ ନାଟକରେ ନାଟ୍ୟକାର ଡଃ ନାରାୟଣ ସାହୁ (୧୯୫୫) ଏକ ମୁଗ୍ଧ ଉଚ୍ଚାରଣ । ମଞ୍ଚ ନାଟକ, ବେତାର ନାଟକ, ଦୂରଦର୍ଶନ ନାଟକ, ଏକାଙ୍କିକା, ଶିଶୁ ନାଟକ ତଥା କେତୋଟି ଉପନ୍ୟାସ ଓ ଗଳ୍ପକୁ ନାଟ୍ୟରୂପ ପ୍ରଦାନ କ୍ଷେତ୍ରରେ ନାଟ୍ୟକର ସାହୁ ଅସମ୍ଭବ ସଫଳତାର ଅଧିକାରୀ । ଆଧୁନିକ ଓଡ଼ିଆ ନାଟକରେ ବିଭିନ୍ନ ପରୀକ୍ଷା ନିରୀକ୍ଷାର ଯେଉଁ ସୂତ୍ରପାତ ଆରମ୍ଭ କରିଥିଲେ ନାଟ୍ୟକାର ମନୋରଞ୍ଜନ ଦାସ, ତାର ଏକ ପରିଚ୍ଛନ୍ନ ଓ ବିସ୍ତାରିତ

ରୂପ ପରିଲକ୍ଷିତ ଶ୍ରୀ ସାହୁଙ୍କ ନାଟକରେ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତା-ଚେତନାରେ ତାଙ୍କ ନାଟକ-ଗୁଡ଼ିକ ସମୃଦ୍ଧ ଓ ବୈଚିତ୍ର୍ୟ ମଣ୍ଡିତ ହେଲେହେଁ, ତାର ମୂଳଟି ରହିଛି ଏହି ପରିଚିତ ମାଟିରେ । ମଣିଷହିଁ ତାଙ୍କ ନାଟକର କେନ୍ଦ୍ରବିନ୍ଦୁ । ସେହି ମଣିଷର ହସ-କାନ୍ଦ, ସୁଖ-ଦୁଃଖ, ଆଶା-ନିରାଶା, ଅହଂକାର, ଆତ୍ମପୀଡ଼ନ, ବ୍ୟକ୍ତିବାଦୀ ଚିନ୍ତାଧାରା, ସ୍ଥିତି ପ୍ରତି ସଂଶୟାତ୍ମକ ଦୃଷ୍ଟି, ଯୁକ୍ତି-ସର୍ବସ୍ୱ ଜୀବନ, ବୃଥା ଆସ୍ଫାଳନ, ନିଃସଙ୍ଗତା, ଅପ୍ରାପ୍ତିଜନିତ ଅବଶୋଷ ଓ ସର୍ବୋପରି ମାନବିକ ସମ୍ବେଦନଶୀଳତା ହୋଇଛି ସେହି ନାଟକଗୁଡ଼ିକର ମୂଳପ୍ରାଣ । ତାଙ୍କ ଚରିତ୍ରଗୁଡ଼ିକ ପ୍ରତି ନିୟମ ଆମ ଚତୁର୍ଦ୍ଦିଗରେ ଘୂରି ବୁଲୁଥିବା ଅଧିକାଂଶତଃ ସାଧାରଣ ମଣିଷ । ସେମାନଙ୍କୁ ଖୋଜିବାକୁ ବେଶି ଦୂର ଯିବାକୁ ପଡ଼େନି । ସମସାମୟିକ ସାମାଜିକ ଚିନ୍ତନ ସହିତ ବର୍ତ୍ତମାନିକ ମଣିଷର ଅନ୍ତଃରୂପ ଉଦ୍‌ଘାଟନ ହୋଇଛି ଶ୍ରୀ ସାହୁଙ୍କ ନାଟକଗୁଡ଼ିକର ସାଧାରଣ ବୈଶିଷ୍ଟ୍ୟ ।

ବିଭିନ୍ନ ଚିନ୍ତା-ଚେତନାର ସଫଳ ପ୍ରତିଶ୍ରୁତି ଶ୍ରୀ ସାହୁଙ୍କ 'ଆଶ୍ରା ଖୋଜୁଥିବା ଈଶ୍ୱର', 'କାହାଣୀ ସବା ଶେଷ ଲୋକର', 'ପୁନଶ୍ଚ ସଂଗ୍ରାମ', 'ସୁବର୍ଣ୍ଣ ସକାଳ', 'ଅଧାଦେଖା ସ୍ୱପ୍ନ', 'ଉପାସନା', 'ମୂକ', 'ପ୍ରଶ୍ନ', 'ଚିଠି', 'ନଅଶହ କୋଡ଼ିଏ', 'ମହାପୁରୁଷ', 'କୁମ୍ଭକର୍ଣ୍ଣ', 'ଶେଷ ପାହାଚ', 'ରାଧା', 'ତାମସୀ ତୃଷା', 'ଏକ ମୃତବ୍ୟକ୍ତି ସପକ୍ଷରେ', 'ଅମ୍ବାପଲ୍ଲୀ ସହ ଦିନେ', 'ନିଷିଦ୍ଧ ସଂଳାପ', 'ଏକାନ୍ତ ଅନୁଭବ', 'ପ୍ରାୟଶ୍ଚିତ୍ତ', 'ଚେତନା', 'ପ୍ରଶ୍ନ', 'ସୌଦାଗର', 'ରିକ୍‌ସାବାଲା', 'ସବା ଶେଷ ଲୋକ', 'ଅସହାୟ ଈଶ୍ୱର', 'ଦରଜା ଖୋଲିଦିଅ', 'ଛୋଟ କଥା', 'ସେମାନଙ୍କ ଖେଳ', 'ସେମାନଙ୍କ ଦୁନିଆ' ଆଦି ମଞ୍ଚନାଟକ, ବେତାର ନାଟକ, ଦୂରଦର୍ଶନ ନାଟକ, ଏକାଙ୍କିକା ଓ ଶିଶୁ ନାଟକଗୁଡ଼ିକ ।

ବିଭିନ୍ନ ଆହରଣ ଓ ସମୀକରଣ ମଧ୍ୟରେ ନାଟ୍ୟକାର ଶ୍ରୀ ସାହୁ ନିଜ ପାଇଁ ସ୍ୱତନ୍ତ୍ର ନାଟ୍ୟ-ବଳୟଟିଏ ସୃଷ୍ଟି କରିପାରିଛନ୍ତି । ତାଙ୍କ ନାଟ୍ୟ ଚରିତ୍ରଗଣ ଯେପରି ସମ-ସାମୟିକ ସମାଜର ସ୍ଥିତାବସ୍ଥା ବିରୋଧରେ ବିଦ୍ରୋହର ସ୍ୱର ଝଂକୃତ କରନ୍ତି, ସେହିପରି ମାନବିକ ଭାବଧାରାଦ୍ୱାରା ଉଦ୍‌ବୁଦ୍ଧ ହୋଇ ଗୋଟିଏ ସୁସ୍ଥ ସୁନ୍ଦର ସମାଜ ଗଠନପାଇଁ ପ୍ରତିଶ୍ରୁତି ଦିଅନ୍ତି । ପୁଣି କେତେବେଳେ ଈଶ୍ୱରଙ୍କ ସ୍ଥିତିପ୍ରତି ସନ୍ଦେହ ପ୍ରକାଶ କରି ସ୍ଥିତିବାଦୀ ଦର୍ଶନର ପ୍ରବକ୍ତା ସାଜିବାବେଳେ, ଅନ୍ୟ କେତେବେଳେ ମଣିଷର ଅନ୍ତଃରୂପ ଉଦ୍‌ଘାଟନ କରି ବ୍ୟକ୍ତି ମଣିଷର ନିଜସ୍ୱ ପରିଚୟଟି ସୃଷ୍ଟି କରିପାରନ୍ତି । ପରମ୍ପରା ପ୍ରତି ଯେପରି ନାଟ୍ୟକାରଙ୍କର ଅଗାଧ ସମ୍ମାନ ରହିଛି,

ସେହିପରି ଇତିହାସର ନବମୂଲ୍ୟାୟନ କରି ତାକୁ ଚଳନ୍ତି ସମାଜର ମହାସ୍ରୋତରେ ସାମିଲ କରିଦେବାର ପ୍ରବଣତା ରହିଛି । ବାସ୍ତବବାଦୀ ଦୃଷ୍ଟିକୋଣରୁ ସେ ଯେପରି ସ୍ୱ-କାଳ ସଚେତନତାର ପ୍ରମାଣ ଦିଅନ୍ତି, ମଣିଷର ଅସହାୟତା, ଜୀବନ-ଯନ୍ତ୍ରଣା ଓ ବିଡ଼ମ୍ବିତ ଜୀବନକୁ ରୂପଦେଇ ସାଂପ୍ରତିକ ସମାଜରେ ମଣିଷର ବଞ୍ଚିବାର ସ୍ଥିତି ନେଇ ପ୍ରଶ୍ନ ଉଠାଇ ପାରନ୍ତି । ପରମ୍ପରା, ପୁରୋଦୃଷ୍ଟି ଓ ବାର୍ତ୍ତମାନିକ ପରିଚୟର ତ୍ରିମୁଖୀ ମିଳନଭୂମି ନାଟ୍ୟକାର ସାହୁଙ୍କ ବିଚିତ୍ର ନାଟ୍ୟଜଗତ ।

**ବ୍ୟକ୍ତିତନ୍ତ୍ରର ଏକ ବିଡ଼ମ୍ବିତ ଅଧ୍ୟାୟ : 'ଅପରାହ୍ନର ଅବଶୋଷ'-** 'ଅପରାହ୍ନର ଅବଶୋଷ' ଓଡ଼ିଶାର ବିଶିଷ୍ଟ ପ୍ରକାଶନ ସଂସ୍ଥା ବିଦ୍ୟାପୁରୀ ଦ୍ୱାରା ୨୦୦୨ ମସିହାରେ ପ୍ରକାଶିତ ହୋଇଥିଲେହେଁ ଏହି ଶିରୋନାମାରେ ଉକ୍ତ ନାଟକଟିର ପ୍ରଥମ ଅଭିନୟ ଦୂରଦର୍ଶନ କେନ୍ଦ୍ର, ଭୁବନେଶ୍ୱର ଦ୍ୱାରା ତା ୬.୧.୨୦୦୦ରେ ଅନୁଷ୍ଠିତ ହୋଇଥିଲା । ଏହାର ଦ୍ୱିତୀୟ ଅଭିନୟ ସୌଖୀନ ନାଟ୍ୟାନୁଷ୍ଠାନ 'କଳାକଞ୍ଚନା' (ଭୁବନେଶ୍ୱର) ତରଫରୁ ନାଟ୍ୟାନୁଷ୍ଠାନ 'ଶାଶ୍ୱତୀ' ଆନୁକୂଲ୍ୟରେ ରାଜ୍ୟସ୍ତରୀୟ ୭ମ ନାଟକ ପ୍ରତିଯୋଗିତା ବ୍ରହ୍ମପୁର ଟାଉନ୍ ହଲ୍‌ଠାରେ ତା ୩୦.୧୨.୨୦୦୦ରେ ଅନୁଷ୍ଠିତ ହୋଇଥିଲା ଓ ସେତେବେଳେ ନାଟକଟିର ନାମ ଥିଲା 'ଅସ୍ତରାଗ' । ସେହିପରି ବିଶ୍ୱ ନାଟ୍ୟ ଦିବସ ଉପଲକ୍ଷେ ଭୁବନେଶ୍ୱରସ୍ଥ ରବୀନ୍ଦ୍ର ମଣ୍ଡପଠାରେ ତା ୨୭.୩.୨୦୦୧ରେ ମଧ୍ୟ 'ଅପରାହ୍ନର ଅବଶୋଷ' ନାମରେ ନାଟକଟି ମଞ୍ଚସ୍ଥ ହୋଇ ଦର୍ଶକୀୟ ଆଦୃତି ଲାଭ କରିଛି । ଏହାଛଡ଼ା 'ଅସ୍ତରାଗର ଏଲିଜି' ନାମରେ ମଧ୍ୟ ଏହି ନାଟକଟି କେତେକ ସ୍ଥାନରେ ଅଭିନୀତ ହୋଇଛି ।

ଜୀବନର ଅପରାହ୍ନରେ ଅତୀତର ସ୍ମୃତି-ବିସ୍ମୃତି ଯେଉଁ ଅବଶୋଷର ଧାରାଟିକୁ ସଜୀବ କରିଦିଏ, ତାହା କେବଳ ବ୍ୟକ୍ତି ଜୀବନ ପାଇଁ ନୁହେଁ, ସାମଗ୍ରିକ ସମାଜ ଜୀବନ ପ୍ରତି ଏକ ଚାଲେଞ୍ଜର ରୂପ ନିଏ । ମଣିଷର ମିଥ୍ୟାଭିମାନ ଓ ସମାଜବିରୁଦ୍ଧ କାର୍ଯ୍ୟକଳାପ ଯେତେବେଳେ ତାକୁ ସମାଜ, ପରିବାର ଓ ଆତ୍ମୀୟମାନଙ୍କଠାରୁ ଦୂରେଇ ଦେଇ ଭିନ୍ନ ଗୋଟିଏ ମଣିଷରେ ରୂପାନ୍ତରିତ କରିଦିଏ, ସ୍ଥିତିହୀନ ବର୍ତ୍ତମାନ ଓ ସମ୍ଭାବନାହୀନ ଭବିଷ୍ୟତ ମଧ୍ୟରେ ସେ ନିଜକୁ ଆବିଷ୍କାର କରେ ଗୋଟିଏ 'ଏକାକୀତ୍ୱର ବଳୟ'ରେ । ଜୀବନର ଅପରାହ୍ନରେ ଅତୀତ ପାଇଁ ଅବଶୋଷ ଆସିଲାବେଳକୁ ତାର ନିଜସ୍ୱ ପ୍ରିୟତମ ବସ୍ତୁଟି ପହଞ୍ଚି ସାରିଥାଏ କେଉଁ ଏକ ଅପହଞ୍ଚ ରାଇଜରେ । ସତେଯେପରି ଅବଶୋଷ ହିଁ ତାର ଭବିତବ୍ୟ ।

'ଅପରାହ୍ନର ଅବଶୋଷ' ନାଟକର ମୁଖ୍ୟ ଚରିତ୍ର ଭାନୁପ୍ରତାପ, ନିଜସ୍ୱ ଖିଆଲକୁ ନେଇ ବଞ୍ଚୁଥିବା ମଣିଷଟିଏ । ଜୀବନର ବିସ୍ତାରିତ ଦିଗ ତଥା ସମୟର ପରିବର୍ତ୍ତନକୁ ସ୍ୱୀକାର କରିପାରୁ ନ ଥିବା ଏହିପରି ବ୍ୟକ୍ତିମାନଙ୍କର ଜୀବନ ସତରେ କେଡ଼େ କରୁଣ ଓ ଅସହାୟ ? ଗୋଟିଏ ମିଥ୍ୟା ଖିଆଲର ବଶବର୍ତ୍ତୀ ହୋଇ ଜୀବନକୁ ଏମାନେ କିପରି ବିଡ଼ମ୍ବିତ କରିପକାନ୍ତି, ତାର ଚମତ୍କାର ପ୍ରମାଣଟିଏ ରାଜା ଭାନୁପ୍ରତାପ । କ୍ଷମତାକୁ ଜାବୋଡ଼ି ଧରିବା ମଣିଷର ଏକ ସ୍ୱାଭାବିକ ପ୍ରବୃତ୍ତି । ଏହିପରି କ୍ଷମତାନ୍ଧ ମଣିଷ ନିକଟରେ ସଂପର୍କର କିଛି ମାନେ ନ ଥାଏ, ସ୍ତ୍ରୀ, ପୁତ୍ର, ସମାଜର କୌଣସି ମୂଲ୍ୟ ନ ଥାଏ । ଜୀବନର ବାସ୍ତବ ନିଷ୍ଠୁରତାକୁ ପ୍ରତି ମୁହୂର୍ତ୍ତରେ ଉପଲବ୍ଧ କରି ମଧ୍ୟ କରିପାରୁ ନ ଥିବା ତଥା ଗୋଟିଏ ମିଥ୍ୟା ଆଟୋପରେ ନିଜର ସ୍ୱାଭିମାନକୁ (?) ଜାହିର କରିବାର ପ୍ରବଣତା ମଣିଷକୁ କିପରି ଅନ୍ଧ କରିଦିଏ, ତାର ଏକ ଚମତ୍କାର ଉଦାହରଣ 'ଅପରାହ୍ନର ଅବଶୋଷ' ନାଟକଟି ।

ବିଗତ ରାଜତନ୍ତ୍ର । ଗଣତନ୍ତ୍ର ଯୁଗରେ ବ୍ୟକ୍ତି ଖିଆଲର ପରିଧି ଖୁବ୍ ସୀମିତ; କିନ୍ତୁ ଏହି ସତ୍ୟଟିକୁ ଗ୍ରହଣ କରିବାକୁ ନାରାଜ ରାଜା ନାମଧାରୀ ଭାନୁପ୍ରତାପ, କାରଣ ସେ ରାଜା । ଗଭୀର ବିଶ୍ୱାସ ତାଙ୍କର ଖିଆଲ ଉପରେ । ମଣିଷ ନିଜର ସୀମା ସରହଦ ସଂପର୍କରେ ସଚେତନ ନ ହୋଇ ପାରିବାଠାରୁ ବଳି ଦୁଃଖ ଆଉ କ'ଣ ଥାଇପାରେ ? ଜୀବନ ଏକ କମ୍ପ୍ରମାଇଜ, ଚାଲେଞ୍ଜ ନୁହେଁ – ଯେକୌଣସି ବୁଦ୍ଧିମାନ୍ ବ୍ୟକ୍ତି ଏହି ସତ୍ୟଟିକୁ ଗ୍ରହଣ କରିନେବା ଉଚିତ । ଯେଉଁମାନେ ଏହି ନିଷ୍ଠୁର ସତ୍ୟ ପ୍ରତି ପରାଙ୍ମୁଖ, ସେହିମାନେ ହିଁ ସମାଜର ସବୁଠାରୁ ଭାବ-ଦରିଦ୍ର । ମଣିଷ କେବଳ ସ୍ୱପ୍ନକୁ ନେଇ ବଞ୍ଚେ ନାହିଁ, ବାସ୍ତବତାକୁ ମଧ୍ୟ ସ୍ୱୀକାର କରିବାକୁ ହୁଏ । ବାସ୍ତବତା ହିଁ ଜୀବନ, ହେଉପଛେ ତାହା ଯେତେ ନିଷ୍ଠୁର ବା ଭୟାନକ । ସମୟର ସ୍ପଷ୍ଟ ସଙ୍କେତ ସତ୍ତ୍ୱେ ବି ରାଜା ଭାନୁପ୍ରତାପ ଏହି ସତ୍ୟଟିକୁ ଗ୍ରହଣ କରିବାକୁ ନାରାଜ ।

ସ୍ୱାଧୀନତାର ପଚାଶ ବର୍ଷ ପରେ ରାଜଗାଦି ଚାଲିଗଲାପରେ ମଧ୍ୟ ରାଜା ତାର ଶୂନ୍ୟ ସିଂହାସନକୁ ନେଇ ଦମ୍ଭୋକ୍ତି କରୁଛି । ରାଜତନ୍ତ୍ରର ବିଲୟ ଘଟିଛି । ଗଣତନ୍ତ୍ରର ହୋଇଛି ଅଭ୍ୟୁଦୟ; ଅଥଚ ମାନସିକ ସ୍ତରରେ ରାଜା ଭାନୁପ୍ରତାପ ସେହି ରାଜତନ୍ତ୍ର ଯୁଗରେ ହିଁ ରହିଯାଇଛି । ସାଧାରଣ ପ୍ରଜାସ୍ତରକୁ ଓହ୍ଲାଇ ଆସିବାକୁ ପ୍ରସ୍ତୁତ ନୁହେଁ । କ୍ଷମତାର ବିଲୟ ପରେ ରାଜା, କେବଳ ଯେ ଜଣେ ସାଧାରଣ ଜନତା ଏହାକୁ ସ୍ୱୀକାର କରିବାକୁ ସେ ନାରାଜ । ୧୯୭୨ ମସିହାରେ ପ୍ରିଭି-ପର୍ସ

ସ୍ୱାଧୀନ ସରକାରଙ୍କଦ୍ୱାରା ରଦ୍ଦ ହେବାପରେ ନାଲି ଚା' ସେବନ କରୁଥିବା ରାଜା, ନିଜ ଅତିଥିଙ୍କୁ ତାହା ଭେଟିଦେବା ସମୟରେ ଏହା ସ୍ୱାସ୍ଥ୍ୟ ପ୍ରତି ହିତକାରକ ବୋଲି ଡାକ୍ତରଙ୍କ ପରାମର୍ଶଟି ଚେତେଇ ଦେଉଛି । ସିଂହାସନ ଆରୋହଣର ଚାଳିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଶୂନ୍ୟ ରାଜପ୍ରସାଦ ମଧ୍ୟରେ ବନ୍ଧୁ, ଅତିଥିହୀନ ରାଜା ଚିତ୍କାର କରନ୍ତି, ''ମୁଁ ରାଜା – । ମୋ ଉତ୍ସବ କେବେ ବନ୍ଦ ହୋଇପାରେନା × × × ମୁଁ ରାଜା – ଦିବାଲୋକରେ ନ ହେଲା ନାହିଁ, ରାତିର ଘନ ଅନ୍ଧକାର ଭିତରେ ମୁଁ ପାଳନ କରୁଛି ମୋ ଅଭିଷେକ ଉତ୍ସବ... ।''

ଅହଂକାର ଓ ଅଭିମାନକୁ ନେଇ ରାଜତ୍ୱ କରି ହୁଏନା । ଦରକାର ଏଥିପାଇଁ ଦୂରଦୃଷ୍ଟିଟିଏର । ଏହି ପୁରୋଦୃଷ୍ଟି ଅଭାବରେ ମଣିଷ ବର୍ତ୍ତମାନରେ ଥାଇ ବି ପରିଚିତ ହୁଏ ଅତୀତରୂପେ । ଏହି ବୃଥା ଅହମିକା ରାଣୀ ସୁଭଦ୍ରାଙ୍କୁ ପରିତ୍ୟାଗ କରିଛି; ଏକମାତ୍ର ସନ୍ତାନର ପାଠପଢ଼ା ଖର୍ଚ୍ଚ ଯୋଗାଇ ନ ପାରିବାର ଅସମର୍ଥତାକୁ ଅହଙ୍କାର ବଶତଃ ପ୍ରକାଶ ନ କରି ଅଧିକ ପଢ଼ିବାର ଆବଶ୍ୟକତା ନାହିଁ ବୋଲି ପରାମର୍ଶ ଦେଇଛି । କୁମାରର ଏକ ଶିକ୍ଷିତା ନର୍ତ୍ତକୀସହ ବିବାହ ପ୍ରସ୍ତାବରେ କ୍ଷୁବ୍ଧ ରାଜା ଗର୍ଜ୍ଜି ଉଠିଛି, ''କୁମାର ରାଜାର ପୁଅ ହୋଇ ଜଣେ ସାଧାରଣ ନାଚବାଲୀକୁ ବିବାହ କରିବ, ଏକଥା ମୁଁ କେବେ ବରଦାସ୍ତ କରିପାରିବି ନାହିଁ ଏବଂ ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ଏହା ସମ୍ଭବ ନୁହେଁ ।''

ଜଣେ କ୍ଷମତା ହରାଇଥିବା, ସମୟ ପ୍ରତିକୂଳରେ ଗତିଶୀଳ ମିଥ୍ୟାଭିମାନୀ, ଅହଂକାର ପୀଡ଼ିତ ରାଜାର ଜୀବନ ବେଦ 'ଅପରାହ୍ନର ଅବଶୋଷ' ହୋଇଥିଲେହେଁ, ସମସାମୟିକ ସାମାଜିକ ଚିନ୍ତନ ହିଁ ହେଉଛି ଏହି ନାଟକର ପ୍ରାଣ । କୁମାର ନିଜ ପିତା ଭାନୁପ୍ରତାପଙ୍କ ବିରୋଧରେ ସ୍ୱର' ଉତ୍ତୋଳନ କରିଛି, ତାଙ୍କ ଅହଙ୍କାର ଓ ଅବିମୃଶ୍ୟକାରିତା ପାଇଁ । ରାଜଗାଦି ଚାଲିଯାଇଥିଲେହେଁ ଭାନୁପ୍ରତାପ ରାଜକୀୟ ଅହଙ୍କାରରୁ ମୁକ୍ତ ନୁହନ୍ତି, ପରିବର୍ତ୍ତିତ ସମୟ ସହିତ ସାଲିସ୍ କରିବାକୁ ପ୍ରସ୍ତୁତ ନୁହନ୍ତି । ମାତ୍ର ପ୍ରଚଳିତ ଶାସନବ୍ୟବସ୍ଥା ତାଙ୍କୁ ଭଗ୍ନରାଜପ୍ରାସାଦର ଚାରି କାନ୍ଥ ମଧ୍ୟରେ ଆବଦ୍ଧ କରିଦେଇଛି । ରାଜତନ୍ତ୍ର ଓ ଗଣତନ୍ତ୍ରର ସଂଘର୍ଷରେ ରାଜତନ୍ତ୍ରର ବିଳୟ ଘଟିଛି । ସମୟର ସ୍ୱରକୁ ଉପଲବ୍ଧ କରିପାରିଥିବା କୁମାର ତେଣୁ ଭାନୁପ୍ରତାପଙ୍କୁ ସତର୍କ କରାଇଦେଇଛି – ''ଆପଣଙ୍କ ଚାହିଁବା ସୀମିତ ହୋଇଯାଇଛି । କାରଣ କ୍ଷମତା, ପ୍ରତିପତ୍ତି, ଅର୍ଥ ସବୁ କିଛି ଆପଣଙ୍କଠାରୁ କାଢ଼ି ନିଆଯାଇଛି । ନିଜସ୍ୱ ଖୋଳପା ଭିତରେ ବଞ୍ଚିଥିବା ଗୋଟିଏ କ୍ଷୁଦ୍ର ପ୍ରଜାପତି ଆପଣ... ।''

ରାଜତନ୍ତ୍ରର ବିଲୋପ ଘଟିଥିଲେହେଁ ରାଜା ପ୍ରତି ତଥାପି ଏ ଦେଶର ଜନସାଧାରଣଙ୍କ ସମ୍ମାନରେ ତ୍ରୁଟି ଘଟି ନାହିଁ । ବୃଦ୍ଧ ଚାକର ରଙ୍କ, ଦେଓ୍ୱାନ ଏବଂ ଏପରିକି ସ୍ୱାଧୀନ ଗଣତନ୍ତ୍ରର ପଦାଧିକାରୀ ବୁଲୁ ମନରେ ତଥାପି ଅବଶିଷ୍ଟ ରହିଯାଇଛି ପରମ୍ପରା ପ୍ରତି ମୋହ ଓ ରାଜାଙ୍କ ପ୍ରତି ସମ୍ମାନବୋଧ । ସେଇଥିପାଇଁ ନାଟକର ଶେଷ ଦୃଶ୍ୟରେ ରାଜା ଭାନୁପ୍ରତାପଙ୍କ ଶବ ଶୋଭାଯାତ୍ରାର ଅବ୍ୟବହିତ ପୂର୍ବରୁ ବନ୍ଧୁ ବିକ୍ରମ କହିଛନ୍ତି- ''ଶେଷରେ ତୁ ଜିତିଗଲୁରେ ଭାନୁ- ! ରାଜା ଥିଲୁ । ରାଜା ହୋଇ ବି ରହିଗଲୁ । ଆମେ ସମସ୍ତେ ହାରିଗଲୁ । ଶେଷଥର ପାଇଁ ମୁଁ ତୋତେ ସାଲ୍ୟୁଟ କରୁଛି "I salute my dear friend ! I salute my dear king !"

ଏହା ସତ୍ତ୍ୱେ ନାଟ୍ୟକାରଙ୍କ ଉଦ୍ଦେଶ୍ୟ ଭିନ୍ନ । ସମୟକୁ ବୁଝିବା ଓ ସମୟ ସହିତ ତାଳ ମିଳାଇ ଚାଲିବା ଯୁଗଚେତନାର ଲକ୍ଷଣ ବୋଲି ନାଟକର ଅନେକ ସ୍ଥଳରେ ବିଭିନ୍ନ ଚରିତ୍ରଙ୍କ ସଂଳାପ ମାଧ୍ୟମରେ ସୂଚେଇ ଦିଆଯାଇଛି । ନାଟକର ପ୍ରଥମ ଦୃଶ୍ୟରେ ସମୟର ସ୍ୱର ବେଶ୍ ସ୍ପଷ୍ଟ । ରୂଢ଼ିବାଦୀ ଚିନ୍ତା ପରିପୁଷ୍ଟ, ସମୟର ଅନାହତ ନାଦକୁ ଅସ୍ୱୀକାର କରୁଥିବା ଏହିପରି ରାଜତନ୍ତ୍ର ବିଳାସୀ ବ୍ୟକ୍ତିବିଶେଷଙ୍କୁ ସଚେତନ କରାଇ ଦେଇଛି । ସମୟ ଝଡ଼ର ଡେଣାରେ ପ୍ରଗତିକୁ ପିଠିକରି ଯେଉଁମାନେ ମୋ ଗତିକୁ ରୋଧିବାକୁ ଚେଷ୍ଟା କରିଥିଲେ, ସେମାନଙ୍କ ଗର୍ବ ଦମ୍ଭ ଆସ୍ଫାଳନ ବୁଦ୍‌ବୁଦ ଆକାରରେ ମିଳାଇଗଲା । ଆଉ ରହିଗଲା ଶେଷହୀନ ହା-ହାକାର ଦୀର୍ଘଶ୍ୱାସ... । ସେହି ଦୀର୍ଘଶ୍ୱାସର ସର୍ବଶେଷ ପରିଣତି ହେଉଛନ୍ତି ଭାନୁପ୍ରତାପ... ରାଜା ଭାନୁପ୍ରତାପ.. । ପ୍ରତାପ ଚାଲିଯାଇଛି, ମାତ୍ର ନାମକୁ ମାତ୍ର ବଞ୍ଚି ରହିଛି ଅଥର୍ବ ଭାନୁ...

ଏ ନାଟକଟି କେବଳ ଇତିହାସର ପୃଷ୍ଠା ଲେଉଟାଏନି । ସାଂପ୍ରତିକ ସମାଜର ତଥାକଥିତ ମିଥ୍ୟାଭିମାନୀ, କ୍ଷମତାବିଳାସୀ, ଅହଂକାର ପ୍ରପୀଡ଼ିତ, ବୃଥା ଆଭିଜାତ୍ୟକୁ ଜାବୋଡ଼ି ଧରିଥିବା ପ୍ରତିଟି ବ୍ୟକ୍ତିବିଶେଷ ବା ଅନୁଷ୍ଠାନ ପ୍ରତି ଏହା ଏକ ଦୃପ୍ତ ଆହ୍ୱାନ । ସେ ରାଜତନ୍ତ୍ରର ପ୍ରତୀକ ଭାନୁପ୍ରତାପ ହୁଅନ୍ତୁ ବା ସାଂପ୍ରତିକ ଗଣତନ୍ତ୍ରର ପ୍ରତୀକ ଲୋକପ୍ରତିନିଧି ଶାସକ ହୁଅନ୍ତୁ । ସମୟର ଚଳନ୍ତି ପ୍ରବାହରେ ସମସ୍ତେ ଅସହାୟ । ସମାଜର ପରିବର୍ତ୍ତିତ ସ୍ରୋତ ସହିତ ସାମିଲ ହୋଇ ନ ପାରିଲେ, ସେ (ସାମାଜିକ ମଣିଷ) ହୋଇଯିବ ଏକଲା ମଣିଷ । ଏହି ଏକାକୀତ୍ୱବୋଧ ଆଧୁନିକ ମଣିଷକୁ ପ୍ରତିନିୟତ ବିପର୍ଯ୍ୟୟ ଗହ୍ୱରକୁ ଠେଲି ଚାଲିଛି । ନିଜକୁ, ନିଜ ଶକ୍ତିର ପରିସରର ସଂକୁଚନତାକୁ ବୁଝି ନ ପାରିବା ଆଜିର ଆଧୁନିକ ମଣିଷର ସର୍ବଶ୍ରେଷ୍ଠ ଦୁର୍ବଳତା ।

ଉଦୟ ସୂର୍ଯ୍ୟ ବେଶ୍ ସଚେତନ ତାର ଅସ୍ତମିତ ଦିଗ ପ୍ରତି; ସେଇଥିପାଇଁ ତ ସେ ପୁଣି ନୂଆ ରୂପରେ, ନୂଆ ଭାବରେ ଜନ୍ମନିଏ ପରଦିନ ଉଷାକାଶରେ । ତାହାହିଁ ତାର ମହତ୍ତ୍ୱ ଓ ମହନୀୟତା ।

ନାଟକର ଏହି ସ୍ୱର କେବଳ କ'ଣ ରାଜତନ୍ତ୍ର ତଥା ରାଜତନ୍ତ୍ରର ଉପାସକ ପାଇଁ ? ସାଂପ୍ରତିକ ଗଣତନ୍ତ୍ରରେ କ୍ଷମତାକୁ ନେଇ ଯେଉଁ ସଂଘର୍ଷ, ଆସନ ପାଇଁ ଦଳାଚକଟା, କ୍ଷମତାଧାରୀଙ୍କ ବୃଥା ଆସ୍ଫାଳନ, ମିଥ୍ୟା ଆଟୋପ, ସମାଜସେବା ନାମରେ ବ୍ୟକ୍ତି ସେବା ଓ ବ୍ୟକ୍ତି ସ୍ୱାର୍ଥ ଅନ୍ତରାଳରେ ସାମୂହିକ ସ୍ୱାର୍ଥକୁ ବଳି ଦେଉଥିବା ବର୍ତ୍ତମାନର ଗାଦିଧାରୀଙ୍କ ପ୍ରତି ଏକ ଚେତାବନୀ ନୁହେଁ କି ? ମାରଣାସ୍ତ୍ର, ଚାବୁକ ଓ ଆସୁରିକ ଶକ୍ତି ବଳରେ କେତେଦିନ ସାଧାରଣ ଜନତାଙ୍କୁ ଚୁପ୍ କରି ହେବ ? ସମୟ ସବୁଠାରୁ ବଡ଼ ପରୀକ୍ଷକ । ତେଣୁ ରାଜତନ୍ତ୍ର ହେଉ ଅଥବା ଗଣତନ୍ତ୍ର ହେଉ ସମୟର ଓଁକାର ନାଦକୁ ଶୁଣିବାକୁ ପଡ଼ିବ । ହୀରୋସୀମାରୁ କାରଗିଲ୍ କେତେ ଦୂର କି ? କିନ୍ତୁ ସାଧାରଣ ମଣିଷହିଁ ସବୁବେଳେ ସତ୍ୟ । 'ଭାନୁପ୍ରତାପ' ମାନେ ସମୟ ପ୍ରବାହରେ ସବୁବେଳେ ଜନ୍ମ ନିଅନ୍ତି । ନିଜର ଅଧିକାର, କ୍ଷମତା ଓ ବିଚାର ପରିସରକୁ ବୁଝି ନ ପାରି ଅହଂକାର, ମିଥ୍ୟାଭିମାନର ବଶବର୍ତ୍ତୀ ହୋଇ ଅସହାୟ ଭାବରେ ମୃତ୍ୟୁବରଣ କରନ୍ତି ଓ ପୁଣି ଆସନ୍ତି ! ରାଜତନ୍ତ୍ରରୁ ଗଣତନ୍ତ୍ର-କ୍ଷମତା ହସ୍ତାନ୍ତରର ଏକ ଆଧୁନିକ ପ୍ରକ୍ରିୟା ବ୍ୟତୀତ ଅନ୍ୟ କ'ଣ ହୋଇପାରେ ?

ଡଃ କୃଷ୍ଣଚନ୍ଦ୍ର ପ୍ରଧାନ
ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଞ୍ଜବିହାର-୭୬୦୦୦୭

